

ପୃଥିବୀର
ଲୋକକଥା
୩୮
ସାନ୍ତାଳ-୮

# ପୃଥିବୀର ଲୋକକଥା

## ସାନ୍ତାଳ ଲୋକକଥା

( ପ୍ରଥମ ସ୍ତର, ଅଷ୍ଟମ ଖଣ୍ଡ )

ଶ୍ରୀ ଲକ୍ଷ୍ମୀଧର ମହାନ୍ତ, ବି.ଏସ୍.ସି., ଏଲ୍.ଏଲ୍.ବି,
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତ, ଏମ୍. ଏ., ବି. ଇଡ୍,

ନୀଳକଣ୍ଠେଶ୍ବର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA

## Santal Lokakatha

## Astam Bhaga

# ପୃଥିବୀର ଲୋକକଥା

ସାନ୍ତାଳ ଲୋକକଥା

ପ୍ରଥମ ଭାଗ, ଅଷ୍ଟମ ଖଣ୍ଡ



ପ୍ରକାଶକ :
ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ପୋ-ଦଧାଳ, ଜି-ପୁରୀ

ପ୍ରଥମ ସଂସ୍କରଣ :
୧୫ ଅଗଷ୍ଟ, ୨୦୦୧

ପ୍ରଚ୍ଛଦପଟ :
ଶ୍ରୀ ରବିନାରାୟଣ ନାୟକ

ମୁଦ୍ରଣ :
ଗ୍ରାମସେବକ ସମବାୟ ପ୍ରକାଶନ ଲିଃ,
ବାଖରାବାଦ, କଟକ-୨

ମୂଲ୍ୟ : ଦଶଟଙ୍କା ମାତ୍ର

# ନିବେଦନ

ଆଜି ଆମେ ଦୁର୍ଦ୍ଦିନର ସମ୍ମୁଖୀନ ।

ଆମେ ଏଠାରେ କେତେକାଳ ହେଲା ଅଛୁ ତାହା ନିର୍ଣ୍ଣୟାତୀତ । ବସ୍ତର ସଭ୍ୟତା ଏହାକୁ ଅଶୀ ହଜାର ବର୍ଷ ତଳକୁ ଲମ୍ବାଇ ଦେଲଣି ।

ଆର୍ଯ୍ୟମାନେ ଏଠାକୁ ଆସିବାଟା ପ୍ରାୟ ପାଞ୍ଚ ହଜାର ବର୍ଷ ତଳର କଥା । ତାର ବହୁପୂର୍ବରୁ ମୁଣ୍ଡାମାନେ ଉତ୍ତର ପୂର୍ବ ଦିଗରୁ ଆସିଥିଲେ । ସାନ୍ତାଳମାନେ ମୁଣ୍ଡା ସଂପ୍ରଦାୟର ଅଂଶ ବିଶେଷ ।

ମଣିଷର ହେତୁ ପାଇଲାଦିନୁ କିପରି ସେ ସୁସ୍ଥ ପରିବେଶରେ ଭଲରେ ରହିବ, ସେଥିପାଇଁ ତାର ଚିନ୍ତା । ଅଭିଜ୍ଞ ମଣିଷ ତାର ଅଭିଜ୍ଞତା ଓ ଚିନ୍ତାଧାରା ଉତ୍ତର ପୁରୁଷକୁ ଉପଦେଶ ମାଧ୍ୟମରେ ଦିଏ । ସବୁ ମଣିଷ ଲଙ୍ଗଳାରେ ଅସୁନ୍ଦର । ସୁନ୍ଦର କରିବାକୁ ତାର ପୋଷାକ ଲୋଡ଼ା । ସେହିପରି ସବୁ ଉପଦେଶ ବିରକ୍ତିକର । ତାର ପରିବେଷଣ ଚିତ୍ତାକର୍ଷକ ଗପ ମାଧ୍ୟମରେ ହୋଇଛି । ସେସବୁ ହେଲା ଲୋକକଥା । ଏହାର ପ୍ରଚାର ଦରକାର ।

ସାନ୍ତାଳମାନେ ଜଙ୍ଗଲରେ ରହନ୍ତି । ବୃକ୍ଷ ପ୍ରୀତ ସେମାନେ ଚିତସ୍ପୃହ । ଶିକାର ତାଙ୍କର ଜୀବିକା । ସେମାନେ ମଜାକର ଆଶ୍ରମରେ ଖୁସିବାସିରେ ରହିବାକୁ ଭଲ ପାଆନ୍ତି । ସେମାନଙ୍କ ଲୋକକଥା ଊନବିଂଶ ଶତାବ୍ଦୀର ଶେଷ ଭାଗରେ ସେସିଲ ହେନ୍‌ରି ବୋମ୍ପାସ୍ ଆଇ·ସି·ଏସ୍· ଇଂରାଜୀରେ ଅନୁବାଦ କରିଥିଲେ । ତାହା ଓଡ଼ିଆରେ ରୂପାନ୍ତରିତ କରାଯାଉଛି । ଚଉଦ ଖଣ୍ଡ ବହିରେ ଏହା ସରିବ ।

ଏହି ଉଦ୍ୟମର ସଫଳତା ପାଇଁ ଆପଣଙ୍କର ସାହାଯ୍ୟ ସହାନୁଭୂତି ଓ ସଦିଚ୍ଛା ଦରକାର ।

 ଲକ୍ଷ୍ମୀଧର ମହାନ୍ତି

# ସୂଚୀପତ୍ର





# ମିଥ୍ୟା ରାଜକୁମାର

ଏକଦା ଜଣେ ରାଜା ଥିଲେ । ତାଙ୍କର ଦୁଇଟି ରାଣୀ । ପ୍ରତ୍ୟେକଙ୍କର ଗୋଟିଏ ଲେଖାଏଁ ଦାସୀ । ସେମାନେ ବି ରାଜାଙ୍କର ରକ୍ଷିତା । କିନ୍ତୁ ସମସ୍ତେ ନିଃସନ୍ତାନ । ଅଳ୍ପ କିଛିଦିନ ପରେ ସେମାନେ କେହି କାହାକୁ ଦେଖି ସହି ପାରିଲେ ନାହିଁ । ଅଯଥା କଳିର ସୃଷ୍ଟି ହେଲା । ତାହା ସେମାନଙ୍କ ମଧ୍ୟରେ ଛୁଟି ପାରିଲା ନାହିଁ । ବରଂ ଏହା ଉତ୍କଟ ହେଲା । ଘର ବିଘର୍ଣ୍ଣି କଲା । ତାହାହିଁ ତାଙ୍କର ରାଜାଙ୍କ ପାଖରେ ଫେରାଦ । ରାଜାଙ୍କ ବିଚାରରେ ବଡ଼ରାଣୀ ଏଥିପାଇଁ ଦାୟୀ । ତେଣୁ ରାଜା ତାଙ୍କୁ ଉଆସରୁ ତଡ଼ିଦେଲେ ।

ନଅର ଉପକଣ୍ଠରେ ତାଳପତ୍ର ଛପର ଗୋଟିଏ ଘର । ରାଣୀ ଯାଇ ସେଇଠି ରହିଲେ । ତାଙ୍କ ପଛେ ପଛେ ତାଙ୍କ ବିଶ୍ୱସ୍ତ ଦାସୀଟି ଉଆସ ଛାଡ଼ି ଚାଲି ଆସିଲା । ସେ ବି ବଡ଼ରାଣୀଙ୍କର ଏଠି ସହଚର ।

ରାଜା ସେମାନଙ୍କୁ ଖାଇବାକୁ କିଛି ଦେଉ ନ ଥିଲେ । ତେଣୁ ଚଳିବାପାଇଁ ସେମାନେ ଭିକ ଉପରେ ନିର୍ଭରଶୀଳ । ଯାହା ଭିକ ମିଳେ, ତାହା ତାଙ୍କର ଦୈହିକ ଓ ମାନସିକ ଖ୍ୱାହିଦା ମେଣ୍ଟାଇବାକୁ ନଅଣ୍ଟ । ତଥାପି ଏଇ ଦୁରବସ୍ଥାରେ ଅଳ୍ପ କିଛି ଦିନ ଚାଲିଗଲା । ଦିନେ ଦାସୀଟି ରାଣୀକୁ କହିଲା—"ଆପଣ ଯଦି ଅନୁମତି ଦେବେ, ମୁଁ ରାଜାଙ୍କୁ ଫସାଇଦେବି । ଫଳରେ ଆମର ଚଳିବାରେ ଆଉ ଅସୁବିଧା କିଛି ରହିବ

ନାହିଁ । ଦାସୀର କଥାରେ ଅସମ୍ମତ ହେବାର ବାଟ ରାଣୀଙ୍କର ନ ଥିଲା । ତାଙ୍କ ସମ୍ମତି ପାଇ ଦାସୀଟି ରାଜାଙ୍କ ପାଖକୁ ଗଲା । ରାଜାଙ୍କୁ କହିଲା—"ରାଣୀ ଆମର ଗର୍ଭବତୀ । ଯେତେବେଳେ ସେ ଉଆସ ଛାଡ଼ିଲେ, ତାଙ୍କ ପେଟରେ ପାଞ୍ଚ ମାସ ପିଲା ହୋଇ-ଯାଇଥିଲା । ସେ ଆପଣଙ୍କ ଉତ୍ତରାଧିକାରୀର ମା' । ତାଙ୍କର ଏଇମିତି ଭାବରେ ଭିକ ମାଗି ଚଳିବାଟା ଭବିଷ୍ୟତରେ ଜଟିଳ ପରିସ୍ଥିତି ସୃଷ୍ଟି କରିପାରେ ।" ଏହାଶୁଣି ରାଜାଙ୍କର ମନ ରାଣୀଙ୍କ ପ୍ରତି ଆଉ କଠୋର ହେଲା ନାହିଁ । ରାଜା ରାଣୀଙ୍କୁ ଗୋଟିଏ ସୁନ୍ଦର ଘରେ ରହିବା ପାଇଁ ବ୍ୟବସ୍ଥା କରିଦେଲେ । ତାଛଡ଼ା ସେମାନଙ୍କ ଚଳିବା ପାଇଁ ସମସ୍ତ ଖର୍ଚ୍ଚ ଯୋଗାଇ ବି ଦିଆଗଲା ।

ସ୍ୱଭାବ ଅନୁଯାୟୀ ଯେତେବେଳେ ପିଲା ଜନ୍ମ ହେବାର କଥା, ଠିକ୍ ସେଇ ସମୟରେ ଦାସୀଟି ରାଜାଙ୍କ ପାଖକୁ ଧାଇଁଲା । ତାଙ୍କର ପୁଅଟିଏ ହୋଇଥିବାର ଶୁଭ ସମ୍ବାଦଟି ଜଣାଇଦେଲା । ଏ ଖୁସି ଖବର ପାଇ ରାଜା ଆନନ୍ଦରେ ବିଭୋର । ଛୁଆ ପାଇଁ ଯାହା ଦରକାର, ସେସବୁ ଅବାଧରେ ନେଇଯିବା ପାଇଁ ସେ ଦାସୀକୁ ଆଦେଶ ଦେଲେ ।

ରାଣୀ ଓ ଦାସୀ ପାଇଁ ଏହା ଥିଲା ଅପୂର୍ବ ସୁଯୋଗ । ଏଇ ହିସାବ ଅବ୍ୟାହତ ଥିବା ପର୍ଯ୍ୟନ୍ତ ସେମାନଙ୍କର ଆରାମରେ ରହିବା ପାଇଁ କିଛି ପ୍ରତିବନ୍ଧକ ନାହିଁ । ଏ ବିଷୟରେ ସେମାନେ ନିଶ୍ଚିତ । ଦୃଢ଼ । ତେଣୁ ପିଲାଟି ବଡ଼ ହୋଇ ଦୌଡ଼ିବାର ବୟସ ଆସିବାର ସମ୍ଭାବ୍ୟ ସମୟରେ ଦାସୀଟି ରାଜାଙ୍କ ପାଖକୁ ଗଲା । ପୁଅ ଗୋଡ଼ରେ ଘୁଙ୍ଗୁଡ଼ି ବାନ୍ଧିଲେ, ଦୌଡ଼ିବାବେଳେ ସେ ଆନନ୍ଦ ପାଇବ । ଏହା ସେ ରାଜାଙ୍କୁ ଜଣାଇଲା । ସେଥିପାଇଁ

ସେ ରାଜାଙ୍କ ଠାରୁ ପଇସା ନେଲା । ସେଥିରେ ହଳେ ଘୁଗୁଂର କିଣି ଆଣିଲା ।

ରାଜା ଯେତେବେଳେ ରାଣୀଙ୍କ ଘର ପାଖଦେଇ ଯାଆନ୍ତି, ଦାସୀର କଥାରେ ରାଣୀ ଘୁଙ୍ଗୁର ବଜାନ୍ତି । ଏ ଶବ୍ଦ ରାଜାଙ୍କ କାନରେ ପଡ଼େ । ପିଲାଟି ଦୌଡ଼ୁଛି । ଏହା ଶୁଣି ରାଜା ଖୁବ ବ୍ୟସ୍ତ । ସେ ଦାସୀକୁ ଡାକି କହନ୍ତି—"ବେଶି ଦୌଡ଼ିଲେ, ପିଲାଟି ତାର ସ୍ୱାସ୍ଥ୍ୟ ରଖି ପାରିବ ନାହିଁ । ପଡ଼ିଯାଇ ଆହତ ହେବ । ତେଣୁ ତାକୁ ବେଶି ଦୌଡ଼ିବାକୁ ଦିଅ ନାହିଁ ।" ରାଜାଙ୍କ କଥା ଶୁଣି ଦାସୀ ରାଣୀ ପାଖକୁ ଦୌଡ଼େ । ରାଣୀଙ୍କୁ ଘୁଙ୍ଗୁର ବଜାଇବାକୁ ମନା କରେ । ତାପରେ ପୁଣି ରାଜାଙ୍କ ପାଖକୁ ଫେରି ଆସି କହେ—"ପିଲାଟି ମା କୋଳରେ ଆରାମ କରୁଛି ।" ଏ ଖବର ଶୁଣି ରାଜା ସନ୍ତୁଷ୍ଟ । ଦାସୀଟିର କୌଶଳ ପ୍ରବଳ । ଯାହା ଫଳରେ ରାଜା କେବେହେଲେ ପୁଅଟିକୁ ଦେଖି ପାରିଲେ ନାହିଁ ।

ଦିନ କାହାକୁ ଅପେକ୍ଷା କରେ ନାହିଁ । ପୁଅକୁ ସିନା ରାଜା ଦେଖି ନାହାନ୍ତି, ତଥାପି ତା ପାଇଁ ସେ କନ୍ୟାଟିଏ ଠିକ୍ କରି ଦେଲେ । କନ୍ୟା ଘରର ଲୋକେ ବି ପୁଅକୁ ଦେଖିବାକୁ ଆସିଲେ ନାହିଁ । ବିବାହ ଦିନ ସ୍ଥିର ହୋଇଗଲା ।

କଥା ଯେ ଆଉ ଲୁଚି ରହିବ ନାହିଁ । ଏ ବିଷୟରେ ରାଣୀ ନିଶ୍ଚିତ । ତେଣୁ ତାଙ୍କୁ ପ୍ରାଣ ଦଣ୍ଡ ମିଳିବ । ତା ପୁଣି ଅତି ନିକଟରେ । ଏ ବିଷୟ ଚିନ୍ତା କରି ରାଣୀ ଗ୍ଲାନିଆ । ଖାଇବା ପିଇବା ବି ଛାଡ଼ିଦେଲେ । ଏ ବ୍ୟସ୍ତ ଓ ବିବ୍ରତ ଅବସ୍ଥା ଦେଖି ଦାସୀଟି ରାଣୀଙ୍କୁ ଅଭୟ ଦେଇ କହିଲା—"ସବୁ ବିପଦରୁ

ଉଛାରର ବାଟ ଅଛି । ବ୍ୟବସ୍ଥା ହେବ । ବ୍ୟସ୍ତ ହୋଇ ଲାଭ ନାହିଁ ।" ଏହା ଭିତରେ ବରାନୁଗମନର ଦିନ ଆସିଗଲା ।

ଦାସୀଟି ମହୁଲ ଫୁଲର ଡେଙ୍ଗ ଆଣି ବାଟିଲା । ସେଥିରେ ଗୋଟିଏ ପିଲାର ମୂର୍ତ୍ତିଟିଏ କଲା । ଯେତେବେଳେ ଶୋଭାଯାତ୍ରା ବାହାରିଲା, ରାଜା ଯାଇ ଆଗ ପାଲିଙ୍କିରେ ବସିଲେ । ତାଙ୍କ ଗହଣରେ ବାଜାବାଲା, ପାଲିଙ୍କି ବାହକ ଓ ସବୁ ବରଯାତ୍ରୀ । ବର ଶେଷ ପାଲିଙ୍କିରେ ଯିବାର କଥା । ଦାସୀଟି ବର ସାଥିରେ ଯିବାର ବାହାନା କରି ମହୁଲ ଫୁଲ ଡେଙ୍ଗ କୋଳରେ ତିଆରି ମୂର୍ତ୍ତିଟି ଧରି ବସିଲା । ଶୋଭାଯାତ୍ରା ଚାଲିଲା ।

କନ୍ୟାଘରଟି ବହୁତ ଦୂର । ଏକା ଦିନକେ ସେଠି ପହଞ୍ଚିବା ଅସମ୍ଭବ । ଶୋଭାଯାତ୍ରା ଯିବା ବାଟରେ ଗୋଟିଏ ବଜାର ପଡ଼ିଲା । ସେଇଠି ରାତିଟି ବିଶ୍ରାମ ନେବା ପାଇଁ ରାଜା ଆଦେଶ ଦେଲେ । ତେଣୁ ସେଇଠି ଡେରା ପଡ଼ିଲା । ରାତି ଅଧ । ସମସ୍ତେ ନିଦ୍ରିତ । ଦାସୀଟି ଉଠିଲା । ବଜାର ପାଖରେ ଗୋଟିଏ ସମାଧି । ସେ ସେଠାକୁ ଗଲା । ସେଠି ଗୋଟିଏ ଦେବତା (ବୋଙ୍ଗା) ରହେ । ସେ ସେଇଠି ପ୍ରାର୍ଥନା କଲା—"ହେ ପ୍ରଭୁ, ମୋତେ ଗୋଟିଏ ବର ଦିଅ । ନଇଲେ, ମୁଁ ତମ ଅବସ୍ଥା ସାଙ୍ଘାତିକ କରିଦେବି ।" ସେଠାରେ ଥିବା ବୋଙ୍ଗା ପଚାରିଲା—"ତୁ କ'ଣ ଚାହୁଁଛୁ ?" ଦାସୀଟି କୋଳରେ ତିଆରି ମୂର୍ତ୍ତିକୁ ଦେଖାଇ କହିଲା—"ମୁଁ ବିବାହ କରିବାପାଇଁ ପୁଅଟି ନେଇ ଯାଉଥିଲି । କିନ୍ତୁ କେଜାଣି କାହିଁକି, ପୁଅଟି ବାଟରେ ଲେଇ ହୋଇଗଲା । ଯଦି ମୋତେ ପୁଅଟିଏ ନ ମିଳିବ, ମୁଁ ଛାଡ଼ିବି ନାହିଁ । ତମ ଉପରେ ଛେପ ପକାଇବି । ଅଭିଶାପ ଦେବି ।" ଦାସୀଟି ଯାହା କହୁଥିଲା, ତା ଯେ ସେ କରିବ, ଏ ବିଷୟରେ ବୋଙ୍ଗା

ନିଃସନ୍ଦେହ । ତେଣୁ ସେ କେଉଁଠୁ ଗୋଟିଏ ପୁଅ ଆଣି ଦାସୀକୁ ଦେଲା । ଏ ସଫଳତା ପାଇ ଦାସୀଟି ଭାରି ଖୁସି । ଠାକୁରଙ୍କ ପାଖରେ ତିନଥର ମୁଣ୍ଡିଆ ମାରିଲା । ସେ ପୁଅକୁ ଧରି ଆସି ପାଲିଙ୍କରେ ବସି ରହିଲା ।

ପରଦିନ ସକାଳୁ ସମସ୍ତେ ଉଠି ପୁଣି ଶୋଭାଯାତ୍ରାରେ ବାହାରିଲେ । କନ୍ୟା ଘରେ ପହଞ୍ଚିବାରେ କିଛି ଅସୁବିଧା ଆଉ ହେଲା ନାହିଁ । ସେଠାରେ ଯଥାରୀତି ବିବାହ ସମ୍ପନ୍ନ ହୋଇ ଗଲା । ସେମାନଙ୍କର ବାହାରିବାର ବେଳ ଦେଖି ଦାସୀ ଦୁଇଟି ଲୋକଙ୍କୁ ବଡ଼ରାଣୀଙ୍କ ପାଖକୁ ପଠାଇଥିଲା, ଖବର ଯେ ବିବାହ ସରିଯାଇଛି । ତେଣୁ ବରଯାତ୍ରୀ ପହଞ୍ଚିଲା ବେଳକୁ ଭଲ ଭୋଜିଟିଏ ଆୟୋଜନ ଯେପରି ହୋଇଥିବ । ରାଣୀ ଦାସୀଟିର କଥାନୁସାରେ ବ୍ୟବସ୍ଥା କଲେ ।

ଠିକ୍ ସମୟରେ ବରଯାତ୍ରୀଙ୍କ ଗହଣରେ ରାଜା ରାଣୀଙ୍କ ଘରେ ପହଞ୍ଚିଲେ । ସେତେବେଳକୁ ଭୋଜିର ଆୟୋଜନ ହୋଇ ସାରିଥିଲା । କନ୍ୟାର ବନ୍ଧୁବାନ୍ଧବ ସାଙ୍ଗ ସାଥୀ ଯେ ସବୁ ଯାଇଥିଲେ, ସେମାନଙ୍କୁ ଭଲ ଭାବରେ ଆପ୍ୟାୟିତ କରିବାରେ ରାଜାଙ୍କୁ କିଛି ଅସୁବିଧା ହେଲା ନାହିଁ । ସେମାନେ ସମସ୍ତେ ଆତିଥ୍ୟପୂର୍ଣ୍ଣତାରେ ଆନନ୍ଦିତ । ମୁଗ୍ଧ । ସେମାନେ ବେଶ୍ ଖୁସିରେ ବିଦାୟ ନେଇ ଚାଲିଗଲେ ।

ତାର କିଛିଦିନ ପରେ ଦ୍ୱିତୀୟ ରାଣୀଙ୍କ ସାଥିରେ ରାଜାଙ୍କର ଅପଡ଼ ହୋଇଗଲା । ସେ ଆଉ ଦ୍ୱିତୀୟ ରାଣୀଙ୍କ ସହ ରହିପାରିଲେ ନାହିଁ । ଉଆସ ଛାଡ଼ି ଆସି ସେ ପ୍ରଥମ ରାଣୀଙ୍କ ସହ ସେଇଠାରେ ରହିଲେ ।

———

# ଖେରେଦୁରର ରାଜାଙ୍କ ସନ୍ତାନ

ଏକଦା ଖେରେଦୁରରେ ଜଣେ ରାଜା ଥିଲେ । ତାଙ୍କର ପାଞ୍ଚ ପୁଅ । ସମସ୍ତଙ୍କର ବିବାହ ବୟସ ହୋଇଗଲା । ସେମାନଙ୍କୁ ପାଞ୍ଚ ଭଉଣୀ ସାଥୀରେ ବିବାହ କରିବାକୁ ରାଜାଙ୍କର ଇଚ୍ଛା । ତେଣୁ ଯେଉଁ ରାଜାଙ୍କର ପାଞ୍ଚଟି ବିବାହ ଯୋଗ୍ୟା ଝିଅ ଅଛନ୍ତି, ତାଙ୍କ ପାଖରେ ପ୍ରସ୍ତାବ ପକାଇବାକୁ ହେବ । ଏହା ହେଲା ରାଜାଙ୍କର ସମସ୍ୟା । ଏ କାର୍ଯ୍ୟ ସମ୍ପାଦନ କରିବା ପାଇଁ ରାଜା ବ୍ରାହ୍ମଣ ଓ ଯୋଗୀଙ୍କୁ ନିଯୁକ୍ତ କଲେ । ଏଣେ ବୃନ୍ଦମୂନ ରାଜାଙ୍କର ବିବାହ ଯୋଗ୍ୟ ପାଞ୍ଚଝିଅ । ସେ ବି ତାଙ୍କୁ ପାଞ୍ଚ ଭାଇ ସାଥୀରେ ବିବାହ କରିବାକୁ ଉତ୍ସୁକ । ଏଥିପାଇଁ ସେମାନଙ୍କର ପଦ, ମର୍ଯ୍ୟାଦା ଓ ପ୍ରତିଷ୍ଠା ସେ ଚାହୁଁ ନ ଥିଲେ । କିନ୍ତୁ ଶୀଘ୍ର ବିବାହ ସେ ବ୍ୟାକୁଳ । ବ୍ରାହ୍ମଣ ଓ ଯୋଗୀମାନେ ଭିକ୍ଷାପାଇଁ ବିଭିନ୍ନ ଅଞ୍ଚଳ ଦେଶ ଓ ରାଜ୍ୟ ବୁଲନ୍ତି । ବହୁ ଲୋକଙ୍କର ସମ୍ପର୍କରେ ଆସି ବିଭିନ୍ନ ଖବର ସଂଗ୍ରହରେ ସେମାନେ ଅଭ୍ୟସ୍ତ । ସେଥିଯୋଗୁ ସେ ବ୍ରାହ୍ମଣ ଓ ଯୋଗୀମାନଙ୍କୁ ପାଞ୍ଚ ଅବିବାହିତ ଯୁବକ ଥିବା ପରିବାରଟିଏ ଖୋଜିବାର ଦାୟିତ୍ୱ ଦେଇଥିଲେ ।

ଏହା ଥିଲା ଦୈବଯୋଗ, ଦିନେ ଉଭୟ ରାଜାଙ୍କର ଚରମାନେ ନଈକୂଳରେ ଗୋଟିଏ ଜାଗାରେ ବିଶ୍ରାମ ନେଉଥାନ୍ତି । ସେମାନଙ୍କର ମଧ୍ୟାହ୍ନ ଭୋଜନ ସରିଲା । ଆରାମ କରିବା ପାଇଁ ସେମାନେ ଧୂଆଁ ଟାଣିଲେ । ଏତିକିବେଳେ ବାହୁଆଡ଼ୁ ବାରକଥାର ଆଲୋଚନା ହୋଇଗଲା । ଯେଉଁ ଖବର ସଂଗ୍ରହ କରିବାକୁ ସେମାନେ ଏତେ ଦିନ ଧରି ବ୍ୟସ୍ତ, ତାହା ଆପେ

ଆପେ ଯେ ମିଳ ଯାଇଛି । ଏହା ଦେଖି, ସେମାନେ ନିଜକୁ ଭାଗ୍ୟବାନ ମଣିଲେ ।

କିନ୍ତୁ ନ ଦେଖି ବିବାହ ପ୍ରସ୍ତାବ ପକାଇବାଟା ଠିକ୍ ହେବ ନାହିଁ । ସେଥିପାଇଁ ଗୃନ୍ଦମୁନ ରାଜାଙ୍କର ଚରମାନେ ଖେରୋଦ୍ଧର ରାଜାଙ୍କ ପୁତ୍ରମାନଙ୍କୁ ଦେଖିବାକୁ ବାହାରିଲେ । ଖେରୋଦ୍ଧର ରାଜାଙ୍କର ଚରମାନଙ୍କର ଆଉ ଆଗକୁ ଯିବାର ଆବଶ୍ୟକତା ନ ଥିଲା । ତେଣୁ ସେମାନେ ସମସ୍ତେ ସାଥୀ ହୋଇ ଖେରୋଦ୍ଧର ରାଜାଙ୍କ ଜଆସକୁ ବାହାରିଲେ ।

ଗୃନ୍ଦମୁନ ରାଜାଙ୍କର ଚରମାନଙ୍କର ଆଗମନ ଖବର ଖେରୋଦ୍ଧର ରାଜାଙ୍କୁ ମିଳିଗଲା । ସେମାନଙ୍କୁ ଉଚ୍ଚ ସିତ ସମ୍ବର୍ଦ୍ଧନା ଜଣାଇବାର ବ୍ୟବସ୍ଥା ରାଜା କରିଦେଲେ । କିନ୍ତୁ ଗୃନ୍ଦମୁନ ଚରମାନେ ତାହା ଗ୍ରହଣ କରିବାକୁ ନାରାଜ । ରାଜକୁମାରମାନଙ୍କୁ ନ ଦେଖିବା ପର୍ଯ୍ୟନ୍ତ ସେମାନେ ଅନ୍ନଜଳ ସ୍ପର୍ଶ କରିବେ ନାହିଁ । ତାହା ତାଙ୍କ ଦେଶର ପ୍ରଥା । ସେମାନେ ତାକୁ ପାଳନ କରିବେ । ଏହା ସେମାନେ ଖେରୋଦ୍ଧର ରାଜାଙ୍କୁ ଜଣାଇ ଦେଲେ ।

ରାଜପୁତ୍ରମାନଙ୍କୁ ଦେଖିଲେ ସେମାନେ ରୂପ ଓ ଗୁଣରେ ନିପୁଣ । ଏହା ଚରମାନଙ୍କର ହୃଦବୋଧ ହେଲା । ଏଥର ଆତିଥ୍ୟ ଗ୍ରହଣ କରିବାରେ ସେମାନଙ୍କର ଆଉ କିଛି ପ୍ରତିବନ୍ଧ ନ ଥିଲା । ବିବାହ ସ୍ଥିର ପାଇଁ ଗୃନ୍ଦମୁନ ରାଜାଙ୍କର ଝିଅମାନଙ୍କୁ ଦେଖିବାକୁ ହେବ । ସେଥିପାଇଁ ଖେରୋଦ୍ଧର ରାଜା ତାଙ୍କ କର୍ମଚାରୀମାନଙ୍କୁ ପଠାଇଲେ । ସେମାନେ ଫେରି ସନ୍ତୋଷ-ଜନକ ବିବରଣୀ ଦେଲେ । ତେଣୁ ବିବାହ ଦିନ ସ୍ଥିର ହୋଇଗଲା ।

ବରାନୁଗମନ ଦଳ । ସୁସଜ୍ଜିତ ବରମାନେ ସ୍ୱୟମ୍ଭୁକ ରାଜାଙ୍କ ଉଆସକୁ ବାହାରିଲେ । ସାଥିରେ ତାଙ୍କର ବରଯାତ୍ରୀ, ଉଆସର ସମସ୍ତ ଭୃତ୍ୟ ଅନୁଚର ଓ ବାଜାବାଲା ଅଛନ୍ତି କିନ୍ତୁ ଚାଟ ସେମାନେ ଯାଉଛନ୍ତି, ବଡ଼ ରାଜକୁମାର ସମସ୍ତଙ୍କୁ ଅଟକାଇଲେ । ଭାଇମାନଙ୍କୁ ତାଙ୍କର ପ୍ରଶ୍ନ ଥିଲା—"ଆମେ ସମସ୍ତେ ଉଆସ ଛାଡ଼ି ଚାଲି ଆସିଲେ । ଘରେ କେବଳ ମା' ଏକୁଟିଆ । ଯଦି କୌଣସି ବିପଦ ଆସେ, ତାହାହେଲେ କ'ଣ ହେବ ?" ତାଙ୍କର ଏ ପ୍ରଶ୍ନ ଅତ୍ୟନ୍ତ ଗୁରୁତର । ପ୍ରଣିଧାନ ଯୋଗ୍ୟ । ଭାଇମାନେ ଚିନ୍ତିତ । କିନ୍ତୁ ନିରୁତ୍ତର । ସେମାନେ ବି ଉଆସକୁ ଫେରି ଯିବାକୁ ଅମଙ୍ଗ । ଏହା ଦେଖି ବଡ଼ ରାଜକୁମାର କହିଲେ—"ମୁଁ ଏଇଠାରୁ ଉଆସକୁ ଫେରି ଯାଉଛି । ମୋର ତାଲି ଓ ତରବାରି ତୁମେ ନେଇଯାଅ । ବିବାହରେ ସେମାନେ ମୋର ପ୍ରତିନିଧିତ୍ୱ କରିବେ । ତରବାରି ସାହାଯ୍ୟରେ କନ୍ୟାର କପାଳରେ ସିନ୍ଦୂର ଦେବ ।" ସେଇଆ ହେଲା । ବଡ଼ରାଜକୁମାର ଉଆସକୁ ଫେରିଆସିଲେ । ବରଯାତ୍ରୀମାନେ ତାଙ୍କ ବାଟରେ ଗଲେ । କନ୍ୟା ଘରେ ବର ପହଞ୍ଚିବା ମାତ୍ରେ ପ୍ରଥମେ ସିନ୍ଦୂର ଆଦାନ ଉତ୍ସବ ପାଳିତ ହେବାର କଥା । ଏହା ବଡ଼ଠାରୁ ଆରମ୍ଭ ହେବ । କିନ୍ତୁ ବଡ଼ ରାଜକୁମାର ଅନୁପସ୍ଥିତ । ତରବାରି ଦ୍ୱାରା ସିନ୍ଦୂର ଆଦାନ ଉତ୍ସବ ପାଳିତ ହେବା ପାଇଁ ପ୍ରସ୍ତାବ ଗଲା । ଏ କଥା ବଡ଼ ରାଜଜେମା ଶୁଣି କାନ୍ଦ କାଟି ଅସ୍ଥିର । ସେ ଏ ପ୍ରକାର ଉତ୍ସବରେ ଅଂଶ ନେବାକୁ ଏକଦମ୍ ଅମଙ୍ଗ । ତାଙ୍କର ପ୍ରଶ୍ନ—"ଏ ଶୋଭାଯାତ୍ରାରେ ଏତେ ଲୋକ ଆସିଲେ, ଅଥଚ ବଡ଼ରାଜକୁମାର ଆସି ପାରିଲେ ନାହିଁ । ଏଥିରୁ ଜଣା-ଯାଉଛି ମୋ ଅନ୍ୟ କନ୍ୟା ଶ୍ରେଷ୍ଠା କନ୍ୟା ବିବାହିତ । ସେଥିପାଇଁ

ଶୋଭାଯାତ୍ରାରେ ଆସିବାକୁ ସେ ଏଡ଼ାଇ ଦେଲେ ।” ବଡ଼ଝିଅ ମଙ୍ଗୁଲା ନ ହେଲେ, ଅନ୍ୟମାନଙ୍କ ବିବାହ କାର୍ଯ୍ୟ ହେବ ନାହିଁ । ଏହା ପ୍ରଚଳିତ ପ୍ରଥା । ତେଣୁ ବଡ଼ଝିଅର ପ୍ରତିବାଦ ସମସ୍ତଙ୍କୁ ଅଡ଼ୁଆରେ ପକାଇ ଦେଲା । ଶେଷକୁ ବାପମା ବହୁ ଆଲୋଚନା ପରେ ଝିଅକୁ ଏ ଉତ୍ସବରେ ଯୋଗଦେବାକୁ ବାଧ୍ୟ କଲେ । ସ୍ତ୍ରୀ ଲୋକମାନେ ତରବାଗ୍ଭରେ ସିନ୍ଦୂର ଦେଲେ ଓ ତରବାଗ୍ଭ ସାହାଯ୍ୟରେ ବଡ଼ ରାଜଜେମାଙ୍କ କପାଳରେ ସିନ୍ଦୂର ବିଆଗଲା । ତାପରେ ସବୁ ଭଉଣୀମାନଙ୍କର ଯଥାଶାସ୍ତ୍ରରେ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ବିରାଟ ଭୋଜିପରେ ବରଯାତ୍ରୀ-ମାନେ ବର ଓ କନ୍ୟାମାନଙ୍କୁ ଧରି ଖେରୋଦ୍ଭବ ରାଜପ୍ରସାଦ ଅଭିମୁଖେ ବାହାରିଲେ । ବାଟରେ ବାଇକୋଣିଆ ଜଙ୍ଗଲ ପଡ଼ିଲା । ସେତେବେଳକୁ ଅନ୍ଧାର ଆସିଗଲାଣି । ଅନ୍ଧାର ରାତିରେ ଆଗକୁ ଆଗେଇବାକୁ ପାଲିଙ୍କି ବାହକମାନେ ନାରାଜ । ସେଇଠି ସେମାନେ ଡେରା ପକାଇଦେଲେ । ରାତି ଅଧିକୁ କେଉଁଠି ଥିଲେ, ଷୋଳ ସହସ୍ର ରାକ୍ଷସ ସେଠି ଆସି ପହଞ୍ଚିଗଲେ । ସେମାନେ ଟିକିଏ ବି ଡେରି କଲେ ନାହିଁ । ଶୋଭା ଯାତ୍ରାରେ ଆସିଥିବା ପାଲିଙ୍କି, ହାତୀ ଓ ଘୋଡ଼ାମାନଙ୍କୁ ଗିଳିବାକୁ ଆରମ୍ଭ କରିଦେଲେ । ଏହା ଦେଖି ତରବାରିକୁ ବିବାହ କରିଥିବା ରାଜକନ୍ୟା ଘୃଣଅା । ଭୟରେ ଥରହର । ବିକଳ ହୋଇ ସେ ବୁଢ଼ୋଙ୍କୁ ପ୍ରାର୍ଥନା କଲା—“ହେ ବୁଢ଼ୋ, ମୁଁ ବିବାହିତ ସତ୍ୟ କିନ୍ତୁ ଏପର୍ଯ୍ୟନ୍ତ ମୁଁ ମୋର ସ୍ୱାମୀକୁ ଦେଖି ନାହିଁ । ସେ ବି ମୋ ପାଖରେ ନାହାନ୍ତି । ମୋତେ ଟିକିଏ ଦୟା କର । ମୋ ପାଲିଙ୍କିକୁ ଅକାଶକୁ ନେଇଯାଇ ନିରାପଦ ଜାଗାରେ ରଖିଦିଅ ।” ବୁଢ଼ୋ ତାର ଆତୁର ପ୍ରାର୍ଥନା ଶୁଣିଲେ ।

ତାର ପାଲଙ୍କିଟି ଉପରକୁ ଉଠି ଏକ ନିରାପଦ ଜାଗାରେ ରହିଗଲା । ତଳେ ଯେ ରହିଗଲେ, ରାକ୍ଷସମାନେ ସେମାନଙ୍କୁ ଗିଳି ପକାଇଲେ । ସକାଳକୁ ସେଠାରେ କାହାକୁ ଦେଖିବାକୁ ଆଉ ମିଳିଲା ନାହିଁ । ଆକାଶରେ ରାଜଜେମା ରହିଗଲେ ସତ କିନ୍ତୁ ତଳେ ଘଟିଥିବା ଦାରୁଣ ଦୃଶ୍ୟ ତାଙ୍କୁ ଗଭୀର ଦୁଃଖ ଦେଲା । ସକାଳ ହେବାରୁ ସେ ଦେଖିଲେ—ଶୁଆଟିଏ କେଉଁଠୁ ଉଡ଼ିଆସି ତାଙ୍କ ପାଖରେ ବସିଲା । ସେ ତାକୁ ଅନୁନୟ ବିନୟ ହୋଇ କହିଲେ—"ତୁ ଟିକିଏ ମୋତେ ଦୟା କର । ମୋର ସ୍ୱାମୀ ଖେରୋହୁର ରାଜପ୍ରାସାଦରେ ଅଛନ୍ତି । ତୁ ତାଙ୍କ ପାଖକୁ ଯିବୁ । ତାଙ୍କୁ ମୋର ଏ ଚିଠିଟି ଦେବୁ ।" ଶୁଆଟି ତାଙ୍କ କଥା ମାନିଲା । ଚିଠିଟି ନେଇ ବଡ଼ରାଜକୁମାରଙ୍କ ହାତରେ ଦେଲା । ଚିଠିଟି ପଢ଼ି ରାଜକୁମାର ସବୁ କଥା ଜାଣିଲେ । ସେ ଆଉ କାଳ ବିଳମ୍ବ କଲେ ନାହିଁ । ସାଙ୍ଗେ ସାଙ୍ଗେ ଭଲ କରି ଭୋଜନ କଲେ । ତାପରେ ନିଜ ଘୋଡ଼ାକୁ ସୁସଜ୍ଜିତ କରି ବାହାରି ପଡ଼ିଲେ । ସେତେବେଳକୁ ସଂଧ୍ୟା ଆଗତ ପ୍ରାୟ । ସେ ଚିନ୍ତା କଲେ—ଏ ଅବେଳାରେ ବାହାରିବାଟା ଉଚିତ ହେବ ନାହିଁ । ସକାଳ ପର୍ଯ୍ୟନ୍ତ ଅପେକ୍ଷା କରିବା ବିବେକର କାମ । ତେଣୁ ରାତି ପାହିବା ପର୍ଯ୍ୟନ୍ତ ଉଆସରେ ଅପେକ୍ଷା କରିବାକୁ ସେ ମନସ୍ଥ କଲେ ।

ପରଦିନ ସକାଳ । ଘୋଡ଼ାରେ ଚଢ଼ି ସେ ଲକ୍ଷ୍ୟ ସ୍ଥଳକୁ ବାହାରି ପଡ଼ିଲେ । ରାଜକୁମାରୀ ତ ତାଙ୍କ ଅପେକ୍ଷାରେ ଥାଏ । ଦୂରରୁ ଜଣେ ଯୁବକ ଘୋଡ଼ାରେ ଆସୁଥିବାର ସେ ଯେମିତି ଦେଖିଛି, ସେ ଶୁଦୋକୁ ପ୍ରାର୍ଥନା କଲେ—"ଦୂରରୁ ଆସୁଥିବା ଯୁବକ ଯଦି ମୋର ସ୍ୱାମୀ, ତାହା ହେଲେ ପାଲଙ୍କିଟି ତଳକୁ

ଓହ୍ଲଯାଉ ।” ସତକୁ ସତ ପାଲିଙ୍କିଟି ତଳକୁ ଆସି ରହିଲା । ବରକନ୍ୟା ପରସ୍ପରକୁ ଭେଟିଲେ । ତାପରେ ଯାହାସବୁ ଘଟିଥିଲା ସେ ସବୁକଥା ରାଜକୁମାରୀ ରାଜକୁମାର ଆଗରେ ବର୍ଣ୍ଣନା କଲେ । ସେମାନଙ୍କର ବିବାହରେ ପ୍ରତିନିଧିତ୍ୱ କରୁଥିବା ଢାଲ ଓ ତରବାରୀ ରାଜକୁମାରୀ ପାଖରେ ରଖିଥିଲେ । ସେସବୁକୁ ସେ ଯୁବରାଜଙ୍କୁ ଦେଲେ । ଯୁବରାଜ ସେଠି କାହାକୁ ଦେଖିବାକୁ ପାଇଲେ ନାହିଁ । ରାତି ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ସେ ସ୍ଥିର କରି ରହିଲେ ।

ରାତି ଯେମିତି ହୋଇଛି, ରାକ୍ଷସମାନେ ପୁଣି ସେଠି ଆସି ଜମା ହୋଇଗଲେ । ଯୁବରାଜ ଟିକିଏ ହେଲେ ଅପେକ୍ଷା କଲେ ନାହିଁ । ସେମାନଙ୍କୁ ହାଣିବାରେ ଲାଗିପଡ଼ିଲେ । ମଲାବେଳେ ସେମାନେ ଗିଳିଥିବା ପାଲିଙ୍କି, ହାତୀଘୋଡ଼ା ଓ ମଣିଷମାନଙ୍କୁ ସବୁ ବାନ୍ତି କରି ପକାଇଲେ । ଏଥର କ'ଣ କରିବାକୁ ହେବ ରାଜକୁମାର ଜାଣି ପାରିଲେ ନାହିଁ । ରାଜ ଜେମାଙ୍କ କଥାରେ ସେ ଗଲେ । ପାଣିରେ ଗୋଟିଏ ଲୁଗା ବୁଡ଼ାଇ ଆଣି ସେଇ ଲୁଗାକୁ ସମସ୍ତଙ୍କ ଉପରେ ଚିପୁଡ଼ିଲେ । ସେ ପାଣି ପଡ଼ିବା ଫଳରେ ସେମାନେ ସମସ୍ତେ ଜୀଇଁ ଉଠିଲେ ।

ବଡ଼ଭାଇ ଯୋଗୁ ସାନ ଭାଇମାନେ ଯେ ଜୀବନ ପାଇଲେ, ଏଥିପାଇଁ ସେମାନେ କୃତଜ୍ଞ ହେଲେ ନାହିଁ । ବରଂ ଭାବିଲେ— ବଡ଼ଭାଇ ଭବିଷ୍ୟତରେ ଏହାର ସୁବିଧା ନେବ । ଉଦ୍ଧାର କରିଥିବାରୁ ସେମାନଙ୍କୁ ଚାକର ଭଳି ବ୍ୟବହାର ବି କରିବ । ସେଥିପାଇଁ ବଡ଼ଭାଇକୁ ନିଃଶେଷ କରିବାକୁ ହେବ । ସେମାନେ ଯଦି ଏଇ ମଜଝାଟରେ ବଡ଼ଭାଇର ପେଟ ଚିରି ପକାଇଦେବେ, ରାକ୍ଷସମାନେ ତାକୁ ଖାଇଦେବେ । ତାର କିଛି ପତ୍ତ ରହିବ

ନାହିଁ । ଫଳରେ ସେମାନଙ୍କର ସୁରକ୍ଷା ହୋଇଯିବ । ଏକଥା କେହି ବି ଜାଣି ପାରିବେ ନାହିଁ । ତାପରେ ସେମାନେ ବଡ଼ଭାଇ ପଟକୁ ବୁଲିପଡ଼ି ତାର ପେଟ ଚିରିଦେଲେ । ଅନ୍ତବୁଜୁଳା ତାର ବାହାରି ଆସିଲା । ଏଇ ଅବସ୍ଥାରେ ଭାଇକୁ ପକାଇ ସେମାନେ ଚାଲିଗଲେ ।

ବଡ଼ଭାଇଟି ସେଇପରି ଅବସ୍ଥାରେ ପଡ଼ି ରହିବ ପାଲିଙ୍କ-ବାଳଙ୍କୁ ଆଦେଶ ଦେଲା—"ରାଜଜେମାଙ୍କୁ ତାଙ୍କ ବାପଘରକୁ ନେଇଯାଅ ।" ଆଦେଶମାନ ପାଲିଙ୍କି ବାହକମାନେ ରାଜ-କନ୍ୟାଙ୍କୁ ବୃଦ୍ଧାମୁନ ରାଜାଙ୍କ ପାଖରେ ପହଞ୍ଚାଇ ଦେଲେ । ରାଜା ସମସ୍ତ କଥା ପାଲିଙ୍କି ବାହକମାନଙ୍କଠାରୁ ଶୁଣି ଖୁବ୍ ଖପା ହେଲେ । ସେ ସେମାନଙ୍କୁ କହିଲେ—"ଯୁବରାଜଙ୍କୁ ଏପରି ଅବସ୍ଥାରେ ଛାଡ଼ି ଆସିବାଟା ତମର ଉଚିତ ହେଲା ନାହିଁ । ତାଙ୍କୁ ନେଇ ଆସିଥିଲେ, ଆମେ ତାଙ୍କୁ ଭଲ କରିବା ପାଇଁ ଚେଷ୍ଟା କରିଥାନ୍ତେ ।"

ରାଜକୁମାର ଜଙ୍ଗଲରେ ସେଇ ଅବସ୍ଥାରେ ପଡ଼ି ଗଁ ଗଁ ହେଉଥାନ୍ତି । ଏହାଭିତରେ ଗୋଟିଏ ଦିନ ଓ ଗୋଟିଏ ରାତି ବିତିଗଲା । ପରଦିନ ରାତିରେ ବୁଢୋ ତାଙ୍କ ସ୍ତ୍ରୀ ସହିତ ବୁଲି ବାହାରିବା ବାଟରେ ରାଜପୁତ୍ରଙ୍କର ଯନ୍ତ୍ରଣା ଗଁ ଗଁ ଶବ୍ଦ ଶୁଣି ପାଇଲେ । କଥାଟି କ'ଣ ଜାଣିବା ପାଇଁ ସେମାନେ ତଳକୁ ଆସିଲେ । ରାଜପୁତ୍ର ଯେଉଁ ଅବସ୍ଥାରେ ପଡ଼ିଥିଲା, ତାକୁ ଦେଖି ସେମାନଙ୍କର ଦୟା ହେଲା । ଅନ୍ତବୁଜୁଳାକୁ ପୁଣି ନେଇ ପେଟ ଭିତରେ ରଖିବାକୁ ସେମାନେ ରାଜକୁମାରକୁ ଆଦେଶ ଦେଲେ । ରାଜକୁମାର ତାହା ପାଳନ କଲେ । ତାପରେ ବୁଢୋ

ତାର ପେଟକୁ ଥାପୁଡ଼ାଇ ଦେବାରୁ ପେଟ ଯୋଡ ହୋଇଗଲା । କ୍ଷତ ଶୁଖିଗଲା । ଏବେ ସେ ସଂପୂର୍ଣ୍ଣ ସୁସ୍ଥ । ଆରୋଗ୍ୟ ।

ରାଜକୁମାର ଏବେ ଚିନ୍ତିତ । ଘରକୁ ସେ ଫେରିଗଲେ, ଭାଇମାନେ ତାଙ୍କୁ ହତ୍ୟା କରିବେ । ଏ ବିଷୟରେ ସେ ନିଶ୍ଚିତ । ତେଣୁ ତାଙ୍କର ଘରକୁ ଫେରିବାର ପ୍ରଶ୍ନ ଉଠୁ ନାହିଁ । ଶ୍ୱଶୁର ଘରକୁ ଯିବାଟା ତାଙ୍କର ଏକମାତ୍ର ବାଟ । ସେଥିପାଇଁ ସେ ଭିକ ମାଗି ମାଗି ଶ୍ୱଶୁର ଘରେ ଆସି ପହଞ୍ଚିଗଲେ । ସେତେବେଳକୁ ସ୍ତ୍ରୀ ତାଙ୍କର ଝରକା ପାଖରେ ବସିଥିଲା । ଭିକାରୀକୁ ଦେଖି ସ୍ତ୍ରୀ ତାଙ୍କର କହିଲା—"ଏ ଭିକାରିଟି ମୋ ସ୍ୱାମୀ ଭଳି ଦେଖା- ଯାଉଛି ।" ଏହାଶୁଣି ଝରକାଟି ତାକୁ ଭିକାରୀ ପାଖକୁ ଯାଇ ଭଲ ଭାବରେ ଦେଖିବା ପାଇଁ ପ୍ରବର୍ତ୍ତାଇଲା । ଝରକାର କଥା ମାନି ରାଜଜେମା ଭିକାରୀ ପାଖକୁ ଆସିଲା । ରାଜକୁମାର ଓ ତାଙ୍କ ସ୍ତ୍ରୀ ପରସ୍ପର ଚିହ୍ନାଚିହ୍ନି ହେଲେ । ଶ୍ୱଶୁର ଘରେ ତାଙ୍କୁ ଉଚିତ ସମ୍ମାନ ଦିଆଗଲା । ସେଇଠାରେ ସେ ଅବସ୍ଥାନ କଲେ ।

ଏହା ଭିତରେ ବହୁ ବର୍ଷ ବିତିଗଲାଣି । ନିଜ ରାଜ୍ୟକୁ ଯାଇ ନିଜର ବୁଢ଼ୀମାକୁ ଦେଖିବାକୁ ରାଜକୁମାରଙ୍କର ପ୍ରବଳ ଆଗ୍ରହ । ରାଜଜେମାଙ୍କର ତାଙ୍କ ସାଥୀରେ ଯିବାକୁ ବି ଜିଦ୍ । ସେଥିପାଇଁ ଉଭୟେ ନିଜ ରାଜ୍ୟକୁ ବାହାରିଲେ । ଉଆସରେ ତାଙ୍କର ଆବଭାବ ଦେଖି ଭାଇମାନେ ଗ୍ଲାନିଆ । ଭୟରେ ଥରହର । ସେମାନେ ତାଙ୍କୁ ରାଜା କରିଦେଲେ । ତାଙ୍କର ଅନୁଗତ ସେବକ ଭଳି ତାଙ୍କ ପାଖରେ ରହିଲେ । ପରବର୍ତ୍ତୀ ଜୀବନ ଯୁବରାଜଙ୍କର ସୁଖରେ କଟିଲା ।

———

# କୁକୁର କନ୍ୟା

କେତେ କାଳର କଥା ।

ଗୋଟିଏ ଯୁବକ । ତାର ଗୋଟେ ମଇଁଷି । ସେ ତାଙ୍କୁ ଜଗେ । ସେମାନେ ଚରନ୍ତିବେଳେ ସେ ତାଙ୍କ ଉପରେ ତୀକ୍ଷ୍ଣ ନଜର ରଖିଥାଏ । ସେ ଦେଖେ—ପ୍ରତିଦିନ ଠିକ୍ ଦି'ପ୍ରହରରେ ଗୋଟିଏ ମାଈ କୁକୁର ଆସେ । ଝ୍ଲେଟ ଝ୍ଲେଟ ଝରଣା ଥିବା ଗିରି ସଙ୍କଟ ଆଡ଼କୁ ଯାଏ । ଏହା ଦେଖି ଦେଖି ସେ ଆଶ୍ଚର୍ଯ୍ୟ । ମନରେ ତାର ବହୁ କୌତୂହଳ ପ୍ରଶ୍ନ । ଏ କୁକୁରଟି କାହାର । କାହିଁକି ଦି'ପ୍ରହରରେ ସେ ଗିରି ସଙ୍କଟ ଆଡ଼କୁ ଯାଉଛି ? ଶେଷକୁ ସେ ଦିନେ ସ୍ଥିର କଲା—କୁକୁର ପଛେ ପଛେ ଯିବ । କୁକୁରଟି କ'ଣ କରୁଛି ଦେଖିବ । ପରଦିନ କୁକୁର ଆସିବା ଆଗରୁ ସେ ଗିରି ସଙ୍କଟକୁ ଗଲା । ସେଠାରେ ଲୁଚି ରହି ଗଲା । କୁକୁରଟି ଆସି ଝରଣା ପାଖରେ ତାର ଚମଡ଼ା ବାହାର କଲା । ତା ଭିତରେ ଲୁଚିଥିଲା ଏକ ଦିବ୍ୟ ସୁନ୍ଦରୀ କନ୍ୟା । ସେ ପଦାକୁ ଆସିଲା । ପାଖ ଝରଣାରେ ମନବୋଧରେ ଗାଧୋଇଲା । ପୁଣି ଉପରକୁ ଉଠି ଦେହରେ ତାର କୁକୁର ଚମଡ଼ା ପକାଇ ଦେବାରୁ ସେ ପୁଣି ଏକ ମାଈ କୁକୁର ପାଲଟି ଗଲା । ତାପରେ ପୁଣି ସେ ଧାଇଁଲା ଗାଁ ଆଡ଼କୁ । ପଛେ ପଛେ ମଇଁଷିଆଳ ଯୁବକ । କୁକୁରଟି ଗାଁରେ ଜଣକ ଘରେ ପଶିଲା । ଯୁବକଟିର ପଡ଼ଶା ଲୋକମାନଙ୍କଠାରୁ ସେ ଘରର ମାଲିକ ସମ୍ପର୍କରେ ଖବର ଗ୍ରହଣ କରିବାରେ କିଛି ଅସୁବିଧା ହେଲା ନାହିଁ । ତାପରେ ସେ ତାର କାମକୁ ଲେଉଟି ଆସିଲା ।

ସେଇ ବର୍ଷ ଯୁବକଟିକୁ ବିବାହ ଦେବା ପାଇଁ ତାର ବାପମାଙ୍କର ଖୁବ ଇଚ୍ଛା । ସେଥିପାଇଁ ସେମାନେ କନ୍ୟାଟିଏ ଖୋଜୁଥାନ୍ତି । ଯୁବକଟି ଏ ଖବର ଶୁଣି କନ୍ୟା ଖୋଜିବା ପାଇଁ ସେମାନଙ୍କୁ ବାରଣ କଲା । ବରଂ କହିଲା—"ମୁଁ ମଣିଷ ପିଲାକୁ ବିବାହ କରିବି ନାହିଁ । ମୁଁ ଗୋଟିଏ ମାଈ କୁକୁରକୁ ବିବାହ କରିବି ।"

ତାର ଏପରି ଅସ୍ୱାଭାବିକ ଓ ଉଦ୍ଭଟ ମନୋବୃତ୍ତି କଥା ଶୁଣି ସମସ୍ତେ ହସିଲେ । ତଥାପି ସେ ଅବିଚଳିତ । ଅଟଳ । ଶେଷକୁ ତାର ଘର ଲୋକ ଭାବିଲେ ସେ ତା ଭିତରେ କୁକୁରର ଆତ୍ମା ଅଛି । ତେଣୁ ତା କଥାରେ ପ୍ରତିବାଦ କରି ଲାଭ ନାହିଁ । ବରଂ ତା କଥା ମାନି ନେବା ଉଚିତ । ସେଥିପାଇଁ ତାର ବାପ-ମା' ତାକୁ ପଚାରିଲେ—"ତୁ କଣ କୌଣସି ନିର୍ଦ୍ଦିଷ୍ଟ କୁକୁରକୁ ବିବାହ କରିବାକୁ ଚାହୁଁଚୁ ?" ଯୁବକଟି ସେଇଁ ଗାଁରେ ଆଜି ଯାହା ଘରେ କୁକୁରଟି ରହେ, ତା ତ ଦେଖିଥିଲା । ତାଛଡ଼ା ସେ ଘରର ମାଲିକ ନାଁ ସଂଗ୍ରହ କରି ରଖିଥିଲା । ତେଣୁ କୁକୁରର ମାଲିକ ନାଁ କହିବାକୁ କିଛି ଅସୁବିଧା ହେଲା ନାହିଁ ।

ଯୁବକଟିର ଘର ଲୋକ ଗଲେ । କୁକୁରଟିର ମାଲିକ ପାଖରେ ବିବାହ ପ୍ରସ୍ତାବ ପକାଇଲେ । ତା କୁକୁରକୁ ମଣିଷ ଜଣେ ସେ ବିବାହ କରିବାକୁ ଚାହୁଁଛି, ଏକଥା କୁକୁର ମାଲିକ ଶୁଣି ନ ହସି ରହି ପାରିଲା ନାହିଁ । ମଜ୍ଜା କରିବା ପାଇଁ ସେ ଏ ପ୍ରସ୍ତାବରେ ରାଜି ହୋଇଗଲା । ବିନା ଆପତ୍ତିରେ କନ୍ୟା ସୁନା ବି ଗ୍ରହଣ କରିନେଲା । ବିବାହ ଦିନ ଧାର୍ଯ୍ୟ ପାଇଁ ଆଉ ଅସୁବିଧା କିଛି ରହିଲା ନାହିଁ । ବାହାଘର ପାଇଁ ଘୁମୁରିଆ ହେଲା । ବରଯାତ୍ରୀମାନେ କନ୍ୟା ଘରକୁ ଗଲେ । ଯଥା ବିଧିରେ

ବାହାଘର ସାରି କୁକୁରଟିକୁ ଅତି ଯାକଜମକରେ ବରଘରକୁ ଘେନି ଆସିଲେ ।

ପ୍ରତିଦିନ ସ୍ୱାମୀ ନିଘୋଡ଼ ନିଦରେ ଶୋଇ ପଡ଼ିଲେ, କୁକୁରଟି ଉଠେ । ତାର ଚମଡ଼ାକୁ ରଖି ଦେଇ ବାହାରକୁ ଯାଏ । ଦିନେ ଯୁବକଟି ଏହା ଦେଖି ନେଲା । ପରଦିନ ଆଉ କି ସେ ଶୁଏ । ନିଦରେ ଶୋଇଲା ଭଳି ଛଟା ଗାଳି ପଡ଼ିରହିଲା । କନ୍ୟାଟି ଯେମିତି କୁକୁର ଚମଡ଼ା ଥୋଇ ପଦାକୁ ବାହାରିଛି, ଯୁବକଟି ଧଡ଼କିନେ ଯାଇ ତାକୁ ଧରି ପକାଇଲା । ପାଖରେ ନିଆଁର ରଡ଼ି । ତାର ଚମଡ଼ାକୁ ସେ ନିଆଁକୁ ପକାଇଦେଲା । ମୁହୂର୍ତ୍ତିକ ମଧ୍ୟରେ ଚମଡ଼ାଟି ଜଳି ପାଉଁଶ ହୋଇଗଲା । କନ୍ୟାଟିର ରୂପ ଆଉ ପରିବର୍ତ୍ତନ ହୋଇ ପାରିଲା ନାହିଁ । ସେ ସେମିତି ସ୍ତ୍ରୀ ଲୋକଟି ହୋଇ ରହିଗଲା । କନ୍ୟାଟି ଅତ୍ୟନ୍ତ ସୁନ୍ଦର । ମଣିଷ ଯେ ଏପରି ସୁନ୍ଦର ହୋଇ ପାରେ ତା ବିଶ୍ୱାସ କରିହେବ ନାହିଁ । ତାର ସୌନ୍ଦର୍ଯ୍ୟ ଦେଖି ସମସ୍ତେ ଆଶ୍ଚର୍ଯ୍ୟ । ମୁଗ୍ଧ । ଏକଥା ଗାଁବାଲା ଜାଣିଲେ । ସମସ୍ତଙ୍କ ତୁଣ୍ଡରେ ଯୁବକଟିର ପ୍ରଶଂସା । ତାକୁ ଧନ୍ୟ ଧନ୍ୟ କଲେ ।

ଯୁବକଟିର ଜଣେ ସାଙ୍ଗ ଥାଏ । ନାଁ ତାର ଜିଭୁ । କୁକୁରଟିଏ ବିବାହ କରି ବନ୍ଧୁ ତାର ଯେଉଁ ସୁଫଳ ପାଇଲା, ଏଥିରେ ଜିଭୁ ପ୍ରଲୋଭିତ । କୁକୁରଟିଏ ବିବାହ କରିବାକୁ ଜିଭୁ ପାଗଳ । ଏହା ସେ ଘର ଲୋକଙ୍କୁ ଜଣାଇ ଦେଲା । ଆଗରୁ ତାର ବନ୍ଧୁ କୁକୁର ବିବାହ କରି ଭଲ କନ୍ୟାଟିଏ ପାଇବାରୁ ଜିଭୁର ସିଦ୍ଧାନ୍ତରେ କେହି ପ୍ରତିବାଦ କଲେ ନାହିଁ । କନ୍ୟା ପାଇଁ କୁକୁରଟିଏ ବାଛି ହେଲା । ବିବାହ ଦିନ ଯେତେବେଳେ

ତା ମୁଣ୍ଡରେ ସୁନ୍ଦର ବଢ଼ିଆଗଲା, ସେ ଭୁକ ଭୁକ ଉଚ୍ଛନ୍ନ । ଅସ୍ଥିର । ତଥାପି ଜବରଦସ୍ତି ତା ମୁଣ୍ଡରେ ସୁନ୍ଦର ବଢ଼ିଆଗଲା । ତାକୁ ଟାଣି ଟାଣି ଆଣିଲେ । ତା ଦେହରେ ଜବରଦସ୍ତି ହଳଦୀ ତେଲ ଲଗାଇଦେଲେ । ଯେତେବେଳେ ତାକୁ ଧରି ବର ଘରକୁ ବାହାରିଲେ, ସେ ଫିଟି ପଳାଇଲା । ଲୋକେ ତା ପଛରେ ଦୌଡ଼ିଲେ । ତାକୁ ଧରିବାକୁ ଚେଷ୍ଟା କଲାବେଳେ ସେ ସେମାନଙ୍କୁ କାମୁଡ଼ିବାକୁ ଗୋଡ଼ାଇଲା । ସେମାନେ ଅତିଷ୍ଠ ହୋଇ ଜନ୍ତୁକୁ ଡାକିଲେ । ଜନ୍ତୁ ତାକୁ ଧରିବାକୁ ଯିବାରୁ ସେ ଜନ୍ତୁକୁ କାମୁଡ଼ି ପକାଇଲା । ଉପରେ ଜନ୍ତୁ ତାକୁ ଛାଡ଼ିଦେଲା । ଲୋକେ ଏହା ଦେଖି ଖୁବ୍ ହସିଲେ । ଜନ୍ତୁ ଲାଜରେ ହୋଇଗଲା । କାହାକୁ ପଦେ କଥା କହିବାକୁ ତାକୁ ଭଲ ଲାଗିଲା ନାହିଁ । ଦୁଇ ତିନ ଦିନ ପରେ ଦଉଡ଼ି ଦେଇ ସେ ଆତ୍ମହତ୍ୟା କଲା ।

———

# ଧନ ନା ବଂଶ

ଏକଦା ଜଣେ ରଜା ଥିଲେ । ତାଙ୍କର ଗୋଟିଏ ପୁଅ । ତାଙ୍କ ରାଜ୍ୟରେ ଜଣେ ସୌଦାଗର ରହୁଥିଲା । ସେ ଖୁବ୍ ଧନୀ । ତାର ବି ଗୋଟିଏ ପୁଅ । ଦୁଇଟିଯାକ ପୁଅ ଗୋଟିଏ ବିଦ୍ୟାଳୟର ଛାତ୍ର । କାଳକ୍ରମେ ସେମାନେ ଘନିଷ୍ଠ ଓ ଅନ୍ତରଙ୍ଗ ହୋଇଗଲେ । ଏମିତିକି କେହି କାହାକୁ ଛାଡ଼ିବାକୁ ନାରାଜ ।

ବିଦ୍ୟାଳୟ ସମୟ ବ୍ୟତୀତ ଅନ୍ୟ ସମୟରେ ସେମାନେ ଏକାଠି ରହନ୍ତି । ସୌଦାଗର ପୁଅ ରାଜା ପୁଅ ସାଥିରେ ରାଜାଙ୍କ ଘରେ ରହେ, ନଇଲେ ରାଜାପୁଅ ବଣିକ ପୁଅ ସାଙ୍ଗେ ତାଙ୍କ ଘରେ ରହେ । ସେମାନଙ୍କର ମନ ଏକ । ସେମାନେ ବହୁ ବିଷୟରେ ଆଲୋଚନାରେ ବ୍ୟସ୍ତ ରହନ୍ତି । ଥରେ ବିଜ୍ଞତା ଓ ଧନ ବିଷୟରେ ଦୁଇବନ୍ଧୁ ଆଲୋଚନା କଲେ । ରାଜାପୁଅ କହିଲା—"ବିଜ୍ଞତା ଓ ଧନ ମଧ୍ୟରୁ ଧନର ପ୍ରାଧାନ୍ୟ ଅଧିକ । ମଣିଷର ଜୀବନ ଧନ ନିୟନ୍ତ୍ରିତ କରେ ।" ବଣିକ ପୁଅର ମତ କିନ୍ତୁ ଭିନ୍ନ । ତା ମତରେ ବିଜ୍ଞତାର ପ୍ରାଧାନ୍ୟ ଧନଠାରୁ ବେଶୀ । ତାହାହିଁ ଜୀବନ ମାର୍ଗର ନିର୍ଦ୍ଦେଶକ । ଆଲୋଚନାଟି ବେଶ୍ ସରଗରମ ହେଲା । କିନ୍ତୁ ନିଜ ନିଜ ମତରେ ସେମାନେ ଅଟଳ । ତାଙ୍କର ମତ ପରିବର୍ତ୍ତନ କରିବାକୁ ଅପ୍ରସ୍ତୁତ । ବଣିକ-ପୁଅ ଶେଷକୁ କହିଲା—"ଏପରି ଆଲୋଚନା ମୂଲ୍ୟହୀନ । ସମସ୍ୟା ନିଷ୍କର ଏହା ଏକ ଆୟୁଧ ହୋଇପାରେ । କିନ୍ତୁ ତାର ଯଥାର୍ଥତା ପ୍ରତିପାଦିତ କରିବା ପାଇଁ ପରୀକ୍ଷା ଆବଶ୍ୟକ । ସେଥିପାଇଁ ମୋ ମତରେ ଆମକୁ ଆମ ଦେଶ ଛାଡ଼ି ଯିବାକୁ ହେବ । ଏକ ଦୂର ଦେଶରେ ଜଣେ ମୁନିବ ପାଖରେ ବର୍ଷେ କାମ କରିବା । ସେଠାରେ ଆମର ସାଫଲ୍ୟପାଇଁ ଧନ ନା ବିଜ୍ଞତା କିଏ ସହାୟକ, ତାହା ପରୀକ୍ଷା କରାଯିବ । ରାଜକୁମାର ଏ ପ୍ରସ୍ତାବରେ ଏକମତ । ତେଣୁ ସେମାନେ ଯିବା ପାଇଁ ଦିନଟିଏ ବି ସ୍ଥିର କରିଦେଲେ ।

ତାପରେ ସେମାନେ ଉଭୟେ ଘରକୁ ଗଲେ । ଯାହା ପଇସା ତାଙ୍କ ହାତକୁ ଆସିଲା, ସେ ସବୁ ସଂଗ୍ରହ କଲେ । ନିର୍ଦ୍ଦିଷ୍ଟ ଦିନ ସକାଳୁ ସକାଳୁ ସେମାନେ ଘରୁ ବାହାରି ପଡ଼ିଲେ । ଯୁବରାଜ ଘରେ କାହାକୁ କିଛି କହି ଆସି ନ ଥିଲେ । କିଛି ବାଟ

ଗଲ ପରେ ବାପ ମା ତାଙ୍କୁ ଘରେ ଖୋଜୁଥିବେ । ଏହା ତାଙ୍କ ମନକୁ ଆସିଲା । ତେଣୁ ସେ ବ୍ୟସ୍ତ । ଚିନ୍ତିତ । ବିବ୍ରତ । ବଣିକର ପୁଅ ତାଙ୍କ ମନ କଥା ଜାଣି ନେଲା । ତେଣୁ ସେ ତାଙ୍କୁ ଆଶ୍ୱାସନା ଦେଇ କହିଲା—"ଆମେ ଆସିବାବେଳେ ମୁଁ ଆମର ଯାତ୍ରାର ଉଦ୍ଦେଶ୍ୟ ଘରେ କହି ଆସିଛି । ମୋ ଘର ଲୋକେ ଏ ଖବର ରାଜାଙ୍କୁ ଦେଇଥିବେ । ତେଣୁ ତମର ଆସିବା ଲାଗି କେହି ବ୍ୟସ୍ତ ହେବେ ନାହିଁ । ସେଥିପାଇଁ ଆମ ଯାତ୍ରା ବନ୍ଦ କରିବାର ଆବଶ୍ୟକତା ନାହିଁ ।" ତାପରେ ସେମାନେ ତାଙ୍କ ରାସ୍ତାରେ ପୁଣି ଚାଲିଲେ । ବାଟରେ ଲକ୍ଷ ଦିନ ବିତିଗଲା । ଏହା ଭିତରେ ସେମାନେ ଗୋଟିଏ ଦୂର ଦେଶରେ ପହଞ୍ଚି ଯାଇଥିଲେ । ସେଠି ବଣିକ ପୁଅଟି କହିଲା—"ଆମେ ଗୋଟିଏ ଲକ୍ଷ୍ୟରେ ଘରୁ ଆସି ଥିଲେ । ସେଇ ଲକ୍ଷ୍ୟ ସାଧନ ପାଇଁ ଆମେ ଏଇଠି ରହିବା । ଯେଉଁ ବାଟରେ ଗଲେ ଆମ ଲକ୍ଷ୍ୟ ହାସଲ ହୋଇ ପାରିବ, ତାହା ହିଁ ଏଇଠି କରିବା ।"

ବଣିକ ପୁଅର କଥା ରାଜାପୁଅ ମନକୁ ପାଇଲା ସତ, କିନ୍ତୁ ସେଠାରେ ରହି ଚାକିରି କରିବା ସପକ୍ଷରେ ସେ ନୁହଁ । ବରଂ ସେ କହିଲା—"ମୁଁ ଘରୁ ଯାହା ଧରି ଆସିଛି ସେଥିରେ ବେଶ୍ ବର୍ଷେ ଦୁଇବର୍ଷ ଆରାମରେ ଏଠି ରହି ହେବ । ସେଥିପାଇଁ ମୋର ଚାକିରି କରିବାର ଆବଶ୍ୟକତା କିଛି ନାହିଁ ।"

ରାଜାପୁଅର କଥା ଅଯୌକ୍ତିକ । ପସନ୍ଦ ଯୋଗ୍ୟ ନୁହେଁ । ଲକ୍ଷ୍ୟ ସାଧନର ଏହା ପରିପନ୍ଥି । ନିଷ୍ପତ୍ତି ମାର୍ଗରୁ ଏହା ବିଚ୍ୟୁତ । ଏହା ବଣିକପୁଅ ଅନୁଭବ କଲା । କିନ୍ତୁ ସେତେବେଳେ ବନ୍ଧୁ ରାଜପୁଅ । ମନରେ ଆଘାତ ଦେବା ତାର ଅନୁଚିତ । ତେଣୁ ସେ କହିଲା—"ତମ କାମ ତମ ଇଚ୍ଛା ଉପରେ ନିର୍ଭରଶୀଳ ।

ମୁଁ କିଛି ଗୋଟିଏ ଚାକିରି କରି ଏଠି ରହିବି ।” ସେ ପାଖ ଗାଁକୁ ଗଲା । ସେଠାରେ ବିଦ୍ୟାଳୟରେ ଗୋଟିଏ ଶିକ୍ଷକ ସ୍ଥାନ ଖାଲି ଥିଲା । ସେଠାରେ ସେ ଶିକ୍ଷକ ହିସାବରେ ରହିଗଲା । ପିଲାମାନେ ତାକୁ ଦୁଇବେଳା ଖାଇବାକୁ ଦିଅନ୍ତି । ତା ଛଡ଼ା ପାରିଶ୍ରମିକ ବାବଦକୁ ତାକୁ କିଛି ପଇସା ମିଳେ । ଫଳରେ ଯାହା ମିଳେ, ତାର ରହଣି ପାଇଁ ଯଥେଷ୍ଟ । ତେଣୁ ଆଣିଥିବା ଟଙ୍କାରେ ତାର ହାତ ବାଜିବାର ପ୍ରଶ୍ନ ଉଠିଲା ନାହିଁ ।

ସେଇ ଗାଁରେ ରାଜପୁଅ ଘରଟିଏ ଭଡ଼ା ନେଇ ରହିଲା । ରାଜାପୁଅ ସେ । ହାତରେ ତା'ର ଅଜସ୍ର ଧନ । ଖର୍ଚ୍ଚ ତାର ବେମାପ । ଏ କଥା ଲୋକେ ଦେଖିଲେ । ସୁବିଧାବାଦୀ ଲୋକେ ତାକୁ ଘେରିଗଲେ । ସେମାନଙ୍କର ତୋଷାମଦର ସୀମା ନାହିଁ । ସେମାନେ ତାର ବନ୍ଧୁ ପାଲଟି ଗଲେଣି । ସେମାନେ ତାର ପ୍ରିୟ ଜନ । ତାକୁ ଖୁସି କରିବାପାଇଁ ସେମାନେ ତତ୍ପର । ସେମାନଙ୍କ ଗହଣରେ ସେ ଅସାମାଜିକ ଓ ଉଦ୍ଦାମ ଜୀବନଯାପନ ଆରମ୍ଭ କରିଦେଲା । ଆଣିଥିବା ଅର୍ଥ ସରିବାକୁ ତାର ବେଶୀ ସମୟ ନେଲା ନାହିଁ । ଏବେ ସେ ନିଃସ୍ୱ । ଖାଲି ସେତିକି ନୁହଁ, ଖାଦ୍ୟ କିଣିବାକୁ ପଇସା ତା ପାଖରେ ବି ରହିଲା ନାହିଁ । ଉପାସ ରହିବାକୁ ଏବେ ସେ ବାଧ୍ୟ ହୁଏ । ଫଳରେ ସେ ଝାଉଁଝାଡ଼ ଗଲା ଶେଷକୁ ତାର କଣ୍ଠା ଦୋହଲିଲା । ତାର ଶୋଚନୀୟ ଅବସ୍ଥା ଦେଖି ସୁବିଧାବାଦୀ ସାଙ୍ଗମାନେ ଦୂରେଇ ଗଲେ । ସେ ଏବେ ସମ୍ପୂର୍ଣ୍ଣ ଭାବରେ ଏକା । ଉପାୟଶୂନ୍ୟ ସେ । ବଣିକପୁଅ ଛଡ଼ା ତାର ନିଜର କେହି ସେଠି ନ ଥିଲେ । ତେଣୁ ସେ ବଣିକପୁଅ ବନ୍ଧୁ ପାଖକୁ ଯାଇ କହିଲା—“ମୋର ପଇସା ସବୁ ଶେଷ ହୋଇ-ଗଲାଣି । ଏଠାରେ ଏବେ ରହିବା ମୋ ପକ୍ଷେ ଅସମ୍ଭବ । ତେଣୁ

ମତେ ଆମ ରାଜ୍ୟକୁ ନେଇଗଲ । ନ ହେଲେ ମୋ ପାଇଁ ଚାକର-ଟିଏ ଯୋଗାଡ଼ କରଦେ ।" ବଣିକପୁଅର ପରୀକ୍ଷା ଏବେ ବ ଅସଂପୂର୍ଣ୍ଣ । ତେଣୁ ତାର ଆଉ ରଜାପୁଅର ତାଙ୍କ ରାଜ୍ୟକୁ ଫେରଯିବାର ପ୍ରଶ୍ନ ଉଠୁନାହିଁ । ସେଥିପାଇଁ ରଜା ପୁଅର ଚାକର-ଟିଏ ଦରକାର । ତାହା ଯୋଗାଡ଼ କରଦେବାକୁ ସେ ପ୍ରସ୍ତୁତ । ଏତକବେଳେ ସେମାନେ ଶୁଣିଲେ ଯେ ଜଣେ ଋଷୀ ଚାକରଟିଏ ଖୋଜୁଛି । ତାର କାମ ହେଲ ବନରେ ବଳଦ ଚରାଇବ ଓ ସନ୍ଧ୍ୟାକୁ କୁଣ୍ଡରେ ପାଣି ପୂରାଇବ । ରଜାପୁଅ ଦେଖିଲ ଏ କାମ ଏକଦମ୍ ସହଜ । ଏହା ସୁବଧାରେ କରହେବ । ତେଣୁ ସେ ଋଷୀଟି ପାଖକୁ ଗଲ । ତା ପାଖରେ ରହିବ ବୋଲ କଥା ଦେଲ । ଚାକରଟିକୁ ପାଇ ଋଷୀଟି ତାର ଚାକରର ସର୍ତ୍ତ ବାଢ଼ି ବସିଲ । ତାହା ହେଲ—ଚାକର କାଳ ମଧ୍ୟରେ ଚାକର ଯଦ ଚାଲିଯିବ, ତାହାହେଲେ ତାର କାଣିଆଙ୍ଗୁଠି କଟା ହେବ । ଯଦ ସେଇ ସମୟ ଭିତରେ ମାଲକ ତାକୁ ବକାଲ ଦଏ, ତାହାହେଲେ ମାଲକର ବ କାଣି ଆଙ୍ଗୁଠିଟି କଟା ହେବ । ଯଦ ଚାକର ସୁରୁ-ଖୁରୁରେ ବଳଦ ଚରାଇବ ଓ କୁଣ୍ଡ ପାଣିରେ ପୂର୍ଣ୍ଣ କରଦେବ ତା'ହେଲେ ତାକୁ କଦଳୀ ପତରେ ଯେତେ ଭାତ ଧରବ, ତାହା ଖାଇବାକୁ ଦଆହେବ । ଯଦ ସେ କାମ ସୁରୁରୁରୁପେ କର ପାରବ ନାହିଁ, ତାହାହେଲେ ତାକୁ ତେନ୍ତୁଳପତରେ ଯେତକ ଭାତ ଧରବ, ସେତକ ଭାତ ତାକୁ ଖାଇବାକୁ ଦଆହେବ । ରାଜାପୁଅ ତ ଆଗରୁ ଚାକର କରବ ବୋଲ ଠିକ୍ କର ନେଇଥିଲ, ତେଣୁ ସେ ଚାକର ସର୍ତ୍ତ ଉପରେ ଗମ୍ଭୀର ଭାବରେ ଆଉ ଚିନ୍ତା କଲ ନାହିଁ । ସେ ଉପରଠାଉରଆ ଭାବରେ ସେଥିରେ ରାଜି ହୋଇଗଲ ।

ପରଦିନ ସକାଳେ ରାଜାପୁଅ ଗୁହାଳର ବଳଦକୁ ଫିଟେଇଲା । ତାକୁ ସେ ଚରାଇବାକୁ ସେ ପଦାକୁ ଆଣିଲା । ବଳଦଟି ପଡ଼ିଆକୁ ଯେମିତ ଆସିଛି, ସେ ଗୋଟିଏ ଜାଗାରେ ସ୍ଥିର ହୋଇ ଚରିଲା ନାହିଁ । ସେ ଖାଲି ଏପଟ ସେପଟ ହେଲା । ଯେଉଁଠି ଗୋରୁଟିଏ ଦେଖିଲା ତା ପାଖକୁ ସେ ଧାଇଁଲା । ପଛରେ ତାର ରାଜାପୁଅ । ସେ ବି ଧାଇଁ ଧାଇଁ ହାଲିଆ । ବଳଦଟି ଯେ ଗୋଟିଏ ଜାଗାରେ ଚରିବ ନାହିଁ, ଏ ବିଷୟରେ ରାଜାପୁଅ ନିଃସନ୍ଦେହ । ତା ପଛରେ ଧାଇଁବାକୁ ସେ ବି ପ୍ରସ୍ତୁତ ନୁହେଁ । ତେଣୁ ତାକୁ ସେ ଘରକୁ ଫେରିଆସି ଗୁହାଳରେ ପୂରାଇଦେଲା । ଏଥର ତାର କୁଣ୍ଡରେ ପାଣି ପୂରାଇବାକୁ ହେବ । ସେ କାମ ବି ସେ କରିପାରିଲା ନାହିଁ । ସେ କୁଣ୍ଡଟିର ତଳପଟ ଫଟା । ତାହା ଗୋଟିଏ ପୁରୁଣା କୂଅ ଉପରେ ଥୁଆ ହୋଇଛି । ଯାହା ପାଣି ରାଜା ଆଣି ଢାଳେ ତାହା ସେ ଫଟା ବାଟେ କୂଅ ଭିତରକୁ ଚାଲିଯାଏ । ଫଳରେ କୁଣ୍ଡରେ ପାଣି ପୂର୍ଣ୍ଣ ହୁଏ ନାହିଁ । ପାଣି କୁଆଡ଼େ ଯାଉଛି ତାହା ପରୀକ୍ଷା କରିବାକୁ ସେ ମୁଣ୍ଡ ଖଟାଇଲା ନାହିଁ । ଶେଷକୁ ପାଣି ଢାଳି ଢାଳି ରାନ୍ତ ହେଲା । ସେ ତାର କାମ ତ ଠିକ୍ ଭାବରେ କରିପାରିଲା ନାହିଁ । ତେଣୁ ତେଲୁଣୀ ପଷରେ ତାକୁ ଭାତ ଦିଆଗଲା । ପେଟ ତାର ପୂରିଲା ନାହିଁ । ଫଳରେ ସେ ଉପାସ ରହିବାକୁ ବାଧ୍ୟ । ସବୁଦିନ ଏକାକଥା । ଶେଷକୁ ଉପାସ ରହିବା ଫଳରେ ତାର କଣ୍ଠା ଦୋହଲିଲା । ସେଠାରେ ଚାକିରି କରିବାକୁ ତାର ଜମା ଇଚ୍ଛା ନ ଥାଏ । କିନ୍ତୁ ସେ ତ ଉପାୟହୀନ । ପଳାଇଲେ କାଣି ଆଙ୍ଗୁଠି ତାର କଟା ହେବ । ଏଇଟା ତାର ଭୟ । ସେଥିପାଇଁ ସେ ଚାକିରି ଛାଡ଼ିପାରୁ ନ ଥାଏ । କିନ୍ତୁ ସେ ଯେ ଏଇ ସାମାନ୍ୟ କାମ ପାଇଁ ଅପାରଗ,

ଆଉ ଅଯୋଗ୍ୟ । ଏହା ସେ ଅନୁଭବ କଲା । ସେଥିପାଇଁ ସେ ଲଜ୍ଜିତ । ସେଇଟା ହିଁ ତା'ର ଭୟ । ସେଥିପାଇଁ ସେ ତାର ବନ୍ଧୁ ପାଖକୁ ଗଲା ନାହିଁ କି ଏକଥା କହିବାକୁ ସାହସ କଲା ନାହିଁ ।

ବଣିକ ପୁଅଟି କିନ୍ତୁ ବନ୍ଧୁ କଥା ସବୁବେଳେ ଭାବେ । ସେ ଯେ ତାଠାରୁ କାହିଁକି ଦୂରେଇ ରହୁଛି, ଏ ବିଷୟରେ ସେ ବିସ୍ମିତ । ବ୍ୟସ୍ତ । କାରଣ ସେ ଖୋଜି ପାଏ ନାହିଁ । ସେଥିପାଇଁ ଦିନେ ସେ ତାର ବନ୍ଧୁକୁ ସାକ୍ଷାତ କରିବାକୁ ଆସିଲା । ବନ୍ଧୁଟି ତାର ଭୟଙ୍କର ଅସୁସ୍ଥ । ଅନାହାର କ୍ଳିଷ୍ଟ । ଶରୀର ତାର ହାଡ଼ ମୟ । ଏହାଦେଖି ସେ ପ୍ରଥମଥର ଭୟଭୀତ । ସବୁ ଖବର ସେ ବନ୍ଧୁ ଠାରୁ ଶ୍ରବଣ କଲା । ତାକୁ ଦିଆଯାଇଥିବା କାମ ଯେ ବନ୍ଧୁ ତାର କରିପାରୁ ନାହିଁ ସେଥିପାଇଁ ତାକୁ ତେନ୍ତୁଳି ପଥରେ ଖାଇବାକୁ ଦିଆ ହେଉଛି, ଏହା ସେ ହୃଦୟଙ୍ଗମ କଲା । ସେ ଦେଖିଲା— ଏହାର ସମାଧାନ ବାଟ ଗୋଟିଏ । ତାହାହେଲା ତାର କାମର ପରିବର୍ତ୍ତନ । ସେଥିପାଇଁ ଉଭୟଙ୍କର କାମ ବଦଳାଇ ଦେବାକୁ ସେ ପ୍ରସ୍ତାବ ଦେଲା । ରାଜାପୁଅ ଶିକ୍ଷକ କାମ କରିପାରିବ । ସେଥିପାଇଁ ଏଥିରେ ରାଜା ପୁଅର ଆପତ୍ତି ନ ଥିଲା । ତେଣୁ ବଣିକପୁଅ ଋଷୀ ଘରେ ରହିଲା । ରାଜାପୁଅ ଶିକ୍ଷକ କାମ କରିବାକୁ ଗାଁକୁ ଚାଲିଗଲା । ଏଇ ପରିବର୍ତ୍ତନରେ ଋଷୀଟିର ବି ଆପତ୍ତି ନ ଥିଲା । ସେ ତ କାମର ପିଆସୀ । ତେଣୁ ଏଥିରେ ସେ ସମ୍ମତ ହେଲା ।

ପରଦିନ ସକାଳେ ବଣିକ ପୁଅ ବଳଦକୁ ଚରାଇବାକୁ ନେଲା । ସେ ବି ଦେଖିଲା ଯେ ବଳଦଟି ଅସ୍ଥିର । ଗୋଟିଏ ଜାଗାରେ ରହି ଚରିବାକୁ ଅପ୍ରସ୍ତୁତ । ଅନ୍ୟ ଗୋରୁଙ୍କ ପଛରେ

ଧାଇଁ ଧାଇଁ ସମସ୍ତ କଟାଇବାରେ ସେ ବ୍ୟସ୍ତ । ଦ୍ୱିପ୍ରହରକୁ ବଣିକପୁଅ ବଳଦଟିକୁ ଘରକୁ ଆଣିଲା । ତାପରେ କୁଣ୍ଡରେ ପାଣି ପୂରାଇବା କାମ ଆରମ୍ଭ କଲା । ପାଣି ଗୁଳିଯାଉଥିବା ଦେଖି କୁଣ୍ଡକୁ ସେ ପରୀକ୍ଷା ନିରୀକ୍ଷା କଲା । ଯେଉଁ ତଳ ଫାଟ ବାଟେ ପାଣି ଗୁଳିଯାଉଥିଲା ତାକୁ ସେ ଦେଖିଲା । ମେଞ୍ଚାଏ ଚିକଟାମାଟି ଦେଇ ଫାଟକୁ ସେ ବନ୍ଦ କରିଦେଲା । ତେଣୁ ପାଣିରେ କୁଣ୍ଡ ପୂର୍ଣ୍ଣ କରିବାକୁ ତାକୁ ଆଉ କିଛି ଅସୁବିଧା ହେଲା ନାହିଁ । ପରେ ଉପରବେଳା ସେ ବଳଦକୁ ପୁଣି ଚରାଇବାକୁ ନେଲା । ସନ୍ଧ୍ୟା ବେଳକୁ ଯେତେବେଳେ ସେ ବଳଦକୁ ନେଇ ଫେରିଲା, ତାକୁ କଦଳୀପତ୍ରରେ ପୁଷ୍ଟ ଭାତ ଖାଇବାକୁ ଦିଆହେଲା । ଜଣକ ପାଇଁ ଯେତିକି ତାର ଖାଦ୍ୟ ଦରକାର, ଏହା ତାଠାରୁ ଯଥେଷ୍ଟ ବେଶି ଥିଲା ।

ବଳଦ ଯେପରି ତାକୁ ଆଉ ହଇରାଣ ନ କରିବ, ତାର ବ୍ୟବସ୍ଥା କରିବାପାଇଁ ସେ ଦୃଢ଼ ନିଷ୍ପତ୍ତି ନେଲା । ପରଦିନ ଯେତେବେଳେ ସେ ବଳଦକୁ ଚରାଇବାକୁ ନେଲା, ସେ ସେ ସାଥିରେ ଗୋଟିଏ ବଡ଼ ଦଉଡ଼ି ନେଇଗଲା । ବଳଦଟିକୁ ସେ ଗୋଟିଏ ଗଛରେ ବାନ୍ଧି ଦେଲା । ତା ପଛରେ ଦୌଡ଼ିବାରୁ ସେ ରକ୍ଷା ପାଇଲା ସତ, କିନ୍ତୁ ସେ ଜାଣେ ଯେ ଏହା କରିବା ଫଳରେ ତାର ସମସ୍ୟା ସମାଧାନ ହେବ ନାହିଁ । ବରଂ ବଳଦ ନ ଚରାଉଥିବାରୁ ତାର ଉପାସ ରହିବା ସାର ହେବ । ଏଥିରୁ ଖଲାସ ପାଇବା ପାଇଁ ସେ ମନେ ମନେ ଚିନ୍ତିତ । ଉପରବେଳା ହେଲା । ସେ ବଳଦକୁ ଚରାଇବାକୁ ବାହାରିଲା । ସାଥିରେ ତାର ଗୋଟିଏ ଟାଙ୍ଗିଆ ଲୁଚାଇକରି ନେଇଗଲା । ବଳଦଟିକୁ ପିଟାଇ ସେ ଘୋଡ଼ା ଆଡ଼କୁ ଅଡ଼ାଇ ନେଲା । ବଳଦଟି ଚରିବାକୁ ଯାଇ

ଯେତେବେଳେ ଗଞ୍ଜିର ଗିରଶଙ୍କଟ ପାଖକୁ ଚାଲି ଆସିଲା, ସେ ଟାଙ୍ଗିଆରେ ବଳଦ ମୁଣ୍ଡକୁ ପ୍ରହାରରେ ଦେଲା । ବଳଦର ମୁଣ୍ଡ ଫାଟିଗଲା ସେ ଅଚେତ ଅବସ୍ଥା ପଡ଼ିରହିଲା । ସେ ବଳଦକୁ ଟାଣି ଟାଣି ନେଇ ଗଞ୍ଜିର ଗିରଶଙ୍କଟରେ ପକାଇଦେଲା । ତାପରେ ସେ ଦୌଡ଼ିଲା ତାର ମୁନିବ ପାଖକୁ । ତା ପାଖରେ ତାର ଗୁହାରି— ବଳଦଟି ଆଉ ଗୋଟିଏ ଗୋରୁ ସାଥିରେ ଲଢ଼ାଲଢ଼ି ହୋଇ ଗଞ୍ଜିର ଗିରଶଙ୍କଟ ପାଖକୁ ଚାଲିଗଲା । ଉପରେ ଠେଲାଠେଲିରେ ସେ ତା ଭିତରେ ପଡ଼ିଗଲା । ଏକଥାକୁ ଚାଷୀଟି ଗ୍ରହଣ କରି ପାରିଲା ନାହିଁ । ମନରେ ତାର ସନ୍ଦେହ । ପ୍ରକୃତ କଥା ସ୍ୱଚକ୍ଷୁରେ ଦେଖିବାକୁ ସେ ଉଦ୍‌ବିଗ୍ନ । ଗଞ୍ଜିର ଗିରଶଙ୍କଟ ପାଖକୁ ସେ ଧାଇଁଲା । ଉପରୁ ବଳଦର ଶବକୁ ସେ ଦେଖିଲା । ଧୂର୍ତ୍ତ ଚାକରର ଦୃଷ୍ଟି ଏଥିରେ ସେ କିଛି ଦେଖିପାରିଲା ନାହିଁ । ମନରୁ ତାର ସନ୍ଦେହ ସବୁ ଉଭେଇଗଲା ।

ତାର କିଛିଦିନ ପରେ କ୍ଷେତରେ ଧାନ ପାଚିଗଲା । ଧାନ କାଟିବାପାଇଁ ବଣିକପୁଅକୁ ଚାଷୀଟିର ହୁକୁମ । ଏହାଶୁଣି ବଣିକ ପୁଅ ପଚାରିଲା—"ମୁଁ କିପରି ଧାନ କାଟିବ ?" "ଦା' ସାହାଯ୍ୟରେ" ଏହା ଥିଲା ଚାଷୀର ଉତ୍ତର । ତା'ହେଲେ ମୁହଁ ଦା ଧାନ କାଟିବ ।" ଚାକରଟି ପଚାରିଲା, ଚାଷୀଟି ଉତ୍ତର ଦେଲା ତୋ ଇଚ୍ଛା ।" ତାପରେ ଚାଷୀ ଚାକରକୁ କହିଲା—"ତୁ ଦାଟିକୁ ଧରି କରି ଯା' । ଯାହା କରିବାକୁ ହେବ ସେଥିପାଇଁ ତୋତେ ସାହାଯ୍ୟ କରିବ । ଏଥିରେ ସନ୍ଦେହ ନାହିଁ ।" ତାପରେ ସେମାନେ ତାକୁ ଦା'ଟିଏ ଦେଲେ । ବଣିକପୁଅ ଦା'ଟି ଧରି କ୍ଷେତକୁ ଚାଲିଗଲା । ସେ ସେଠି ପହଞ୍ଚି ଦା'କୁ ପରୀକ୍ଷା ନିରୀକ୍ଷା କଲା । ତାହା ତ ଚକ୍ ଚକ୍ ହୋଇ ଖୁବ୍ ଝଟକୁଥିଲା । ତାଛଡ଼ା

ଖବରେ ତାକୁ ଆଣିଥିବାରୁ ସେ ତାତ ଯାଉଥିଲା । ବଣିକପୁଅ ତା'କୁ କହିଲା—"ପ୍ରିୟବନ୍ଧୁ ! ତମକୁ ଜର । ଦେହ ତମର ତାତୁଛି । ତେଣୁ ତୁମ ସାହାଯ୍ୟରେ ମୁଁ ଧାନ କାଟି ପାରିବି ନାହିଁ । ତମେ ଭଲ ହେବା ପର୍ଯ୍ୟନ୍ତ ବିଶ୍ରାମ ନିଅ ।" ତାପରେ ସେ ତା'ଟିକୁ ନେଲା । ଘରେ ରଖିଲା । ନିଜେ ଏପଟ ସେପଟ ହୋଇ ବୁଲିବାରେ ଲାଗିଲା । ସେତିକବେଳେ ଋଷୀଟି ଆସି ସେଠି ହାଜର । କିଛି କାମ ହୋଇ ନାହିଁ । ସେଥିଯୋଗୁ ତାର ରାଗ ବଢ଼ୁଛି । ସେ ବଣିକ ପୁଅ ଉପରେ ଗର୍ଜି ଉଠିଲା—"ମୁଁ ତୋତେ ଧାନ କାଟିବାକୁ ପଠାଇଥିଲି ନା ଏଠି ଟହଲ ମାରିବାକୁ ପଠାଇଥିଲି ?" ଏହାଶୁଣି ବଣିକପୁଅ ନିର୍ବିକାର । ବରଂ ନିର୍ଭୀକ ଭାବରେ ଉତ୍ତର ଦେଲା—"ଧାନ କାଟିବାକୁ ପଠାଇଥିଲ, କିନ୍ତୁ ତା'କୁ ବେଶି ଜର । ସେ ଅସୁସ୍ଥ । ତାକୁ ମୁଁ ଘରେ ବିଶ୍ରାମ ଦେଉଛି । ଆସ । ଦେଖ । ତା ଦେହ କେମିତି ତାତୁଛି ।" ଏ ଉତ୍ତର ଋଷୀଟି ପ୍ରତି ଅସହ୍ୟ । ସେ ଅପମାନ । ରାଗରେ ତମ ତମ ହୋଇ କହିଲା—"ତୁ ବୋକା ଛଡ଼ା ଆଉ କିଛି ନୁହଁ । ଏଠି ତୋର କିଛି କରିବାର ନାହିଁ । ତୁ ଘରକୁ ଯା । ବଡ଼ ଘରେ ନିଆଁ ଲଗାଇଦୁ । ମୁଁ ସେଠି ପହଞ୍ଚିଲା ବେଳକୁ ପାଣି ଯେମିତି କିଛି ଫୁଟା ହୋଇଥିବ ।" ବଣିକ ପୁଅଟି ତାର ମାଲିକକୁ କପଟ ତଡ଼ାଇବ, ସେଥିପାଇଁ ବାଟ ଖୋଜୁଥିଲା । ମାଲିକର କଥା ଅସ୍ପଷ୍ଟ ।" ଦ୍ୱିଅର୍ଥକ । ସେ ତାର ସୁବିଧା ନେଲା । ସେ ଘରକୁ ଗଲା । ବଡ଼ ଘରଟିରେ ନିଆଁ ଲଗାଇଦେଲା । ବ୍ୟାପକ ଅଗ୍ନିକାଣ୍ଡ ଦେଖି ଋଷୀଟି ଘରକୁ ଧାଇଁଲା । ନିଜ ଘରଟି ତାର ଜଳୁଛି । ସେ ବଣିକପୁଅକୁ ପଚାରିଲା—"ଏ ପ୍ରକାର ଅନିଷ୍ଟ କରି ଏ ସଂସାରରୁ ତୁ କ'ଣ ପାଇବୁ ?" ବଣିକ

ପୁଅ ଅତି ନମ୍ର ଭାବରେ କହିଲା—"ତୁମେ ମୋର ସୁଯୋଗ୍ୟ ମାଲିକ । ତମ କଥା ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବା ମୋର କର୍ତ୍ତବ୍ୟ । ଏହା କରିବାରେ ମୁଁ କଦାପି ବିଚଳିତ ହୋଇନାହିଁ ।" ଋଷୀଟି ଦେଖିଲା ତା କଥାକୁ ବଣିକପୁଅ ଯେପରି ଅର୍ଥ କଲା ସେଇପରି ଅର୍ଥ ତା କଥାରୁ ବାହାରିବ । ସେଥିପାଇଁ ତାକୁ ଦୋଷ ଦେଇ ହେବ ନାହିଁ । ବରଂ ଏଥିପାଇଁ ତାକୁ ଘରୁ ଚଡ଼ଦେଲେ, ଆଙ୍ଗଠିଟି ତାକୁ ହରାଇବାକୁ ହେବ । ଋଷୀଟିଦେଖିଲା—ଏପରି ଏକ ଅଦରକାଣ୍ଡ ଘରେ ରଖି ଲାଭ ନାହିଁ । ବରଂ ତାକୁ ଅନ୍ୟ ବାଟରେ ବିଦା କରିବାକୁ ହେବ । ଏହା ଥିଲା ତାର ଶେଷ ନିଷ୍ପତ୍ତି । ତା ପରଦିନ ସେ ଘରକୁ ଡାକି କହିଲା—"ଘରପୋଡ଼ ମୋର ଦୁର୍ଭାଗ୍ୟ କଥା । ଏହା ଶ୍ୱଶୁର ମୋର ଜାଣିବା ଉଚିତ । ତେଣୁ ମୋର ଚିଠିଟି ନେଇ ତୁ ମୋର ଶ୍ୱଶୁରଘରକୁ ଯିବୁ ।

ବଣିକପୁଅଟି ଚିଠି ଧରି ବାହାରିଗଲା । ବାଟରେ ସେ ଭାବିଲା—ଏ ଚିଠିରେ କଣ ଲେଖା ଅଛି, ତାହା ତାର ଜାଣିବା ଉଚିତ । ତେଣୁ ସେ ଚିଠିଟି ଖୋଲି ଦେଖିଲା ଯେ ଚିଠି ପାଇବା ମାତ୍ରେ ପତ୍ରବାହକକୁ ହତ୍ୟା କରିବାପାଇଁ ଚିଠିରେ ତାର ଶ୍ୱଶୁରକୁ ତାର ମାଲିକଅନୁରୋଧ । ସାଙ୍ଗେ ସାଙ୍ଗେ ବଣିକ ପୁଅଟି ଚିଠିଟିକୁ ଚିରି ଦେଲା । ଋଷୀ ନାଁରେ ଆଉ ଗୋଟିଏ ଚିଠି ଲେଖିଲା ଯେ ଏ ଚିଠିର ବାହକ ଗୋଟିଏ ଉତ୍ତମ ଘରର । ଆମ ପରିବାରରେ ତାକୁ ବିବାହ ଦେବାକୁ ମୁଁ ଚାହେଁ । ମୋର ତ ଝିଅ ନାହିଁ । ନ ହେଲେ ମୁଁ ତାକୁ ମୋ ଝିଅକୁ ବାହା କରି-ଥାଆନ୍ତି । ତେଣୁ ମୁଁ ଆଶା କରୁଛି ଯେ ତୁମେ ଏ ଚିଠି ପାଇଲା ମାତ୍ରେ ତାକୁ ତମର ଗୋଟିଏ ଝିଅ ସାଥିରେ ବିବାହ କରିଦେବ ।

ଏ ଚିଠିଟି ଧରି ସେ ତାର ଶ୍ୱଶୁରଙ୍କ ଘରକୁ ଗଲା । ଏ ଚିଠିଟି ପାଇ ଶ୍ୱଶୁର ଜ୍ୱାଇଁର ଅନୁରୋଧ କଥା ଜାଣିଲେ । ଏଥିରେ ଶ୍ୱଶୁର ବିସ୍ମିତ । ସେ ବଣିକ ପୁଅକୁ ପଚାରିଲେ—"ଏ ଚିଠିରେ କ'ଣ ଲେଖାଅଛି, ସେ ବିଷୟରେ ତୁ କିଛି ଜାଣିଛୁ କି ?" "ମୁଁ ଏ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ । ତା ଛଡ଼ା ମୁଁ ଗୋଟିଏ ଗାଈଆଳ । ଲେଖା ପଢ଼ା ବି ଜାଣି ନାହିଁ ।" ଏହା ଥିଲା ବଣିକ ପୁଅର ଉତ୍ତର । ତାଛଡ଼ା ଋଷୀର ଶ୍ୱଶୁର ବଣିକ ପୁଅର ଚାଲିଚଳନରୁ ଦେଖିଲା ଯେ ସେ ଅତି ସରଳ । ନମ୍ର । ତେଣୁ ବଣିକପୁଅ ପ୍ରତି ତାର ଯାହା ସନ୍ଦେହ ଥିଲା, ତାର ଅବସାନ ଘଟିଲା । ଋଷୀର ଶ୍ୱଶୁର ବିବାହର ଆୟୋଜନ କଲା । ବଣିକ ପୁଅ ସାଥିରେ ତାଙ୍କ ଝିଅର ବିବାହ କରିଦେଲା । ବଣିକ ପୁଅଟି ତାର ସ୍ତ୍ରୀ ଘରେ ସ୍ଥାୟୀ ଭାବରେ ରହିଲା ।

ଯାହା ସବୁ ହେଲା ସେ ବିଷୟରେ ଋଷୀଟି ପାଖରେ ପରେ ଖବର ପହଞ୍ଚିଲା । ସେ ଅନୁଭବ କଲା—ବଣିକ ପୁଅର ବୁଦ୍ଧି ତୀକ୍ଷ୍ଣ ଓ ପ୍ରଖର । ସେ ବି ଧୂର୍ତ୍ତ । ଯାହା ଫଳରେ ସେ ତାଠାରୁ ସବୁ ସୁବିଧା ହାସଲ କରି ନେଇଛି । ସେ ଦେଖିଲା ସେ ନ ପଳାଇଲେ ତାର ଆଉ ରକ୍ଷା ନାହିଁ । ଶେଷକୁ ତାର ଆଙ୍ଗୁଠି କଟାହେବ । ତେଣୁ ସେ ଘରଦ୍ୱାର ଛାଡ଼ି ପଳାଇଲା । ତା ବିଷୟରେ କିଛି ଆଉ ଶୁଣାଗଲା ନାହିଁ ।

ଏ କଥା ବଣିକ ପୁଅ କାନରେ ପଡ଼ିଲା । ସେ ଏବେ ଆଶ୍ୱସ୍ତ ଯେ ଋଷୀର ବନ୍ଧନରୁ ଏବେ ସେ ମୁକ୍ତ । ତେଣୁ ସେ ତାର ପୁରାତନ ବନ୍ଧୁ ରାଜପୁତ୍ର ପାଖକୁ ସେ ଗଲା । ସେ ଦେଖିଲା ସେଇ ଗାଁରେ ରହି ରାଜପୁତ୍ର ପିଲାଙ୍କୁ ପଢ଼ାଇବାରେ ବ୍ୟସ୍ତ । ସେ

ରାଜାପୁଅକୁ ପଚାରିଲା—"ଧନ ଓ ବିଜ୍ଞତା ଭିତରେ କିଏ ଶ୍ରେଷ୍ଠ ? ଏ ବିଷୟରେ ତମର ମତାମତ କ'ଣ ? ମୋର ବିଜ୍ଞତା ବଳରେ ମୁଁ ସ୍ତ୍ରୀଠାରୁ ଅଧିକ ସୁବିଧା ନେଲି । ମୋର ଖାଇବା ପାଇଁ ସ୍ଥିରହିବା ଘିଅ ଅପେକ୍ଷା ସେ ମୋତେ ବେଶୀ ଘିଅ ଖାଇବାକୁ ଦେଲା । ମୁଁ ତାର ବଳଦକୁ ହତ୍ୟା କଲି । ନିଆଁ ଲଗାଇ ଘର ଜାଳି ଦେଲି । ପଇସାଟିଏ ଖର୍ଚ୍ଚ ନ କରି ବିବାହ କଲି । ପୁଣି ତାର ଶାଳୀକୁ । କିନ୍ତୁ ତୁମେ ଯାହା ପଇସା ଘରୁ ଆଣିଥିଲ ତାକୁ ଉଡ଼ାଇ ଦେଲ । ଶେଷକୁ ଉପାସ କଷ୍ଟ ଓ ଅସୁବିଧା ଭୋଗ କଲ । ତମର ପଇସା ତମର କ'ଣ ମଙ୍ଗଳ କଲା ?" ରାଜପୁତ୍ର ନୀରବ । ଉତ୍ତର ଦେବାକୁ ଭାଷା ତାର ନ ଥିଲା ।

ତିନି ଚାରି ଦିନ ପରେ ସେମାନେ ନିଜରାଜ୍ୟକୁ ଫେରିବା ପାଇଁ ରାଜପୁତ୍ର ପ୍ରସ୍ତାବ ଦେଲା । ଏଥିରେ ବଣିକ ପୁଅ ରାଜି । କିନ୍ତୁ ଯିବା ପୂର୍ବରୁ ସେ ତାର ସ୍ତ୍ରୀ ଓ ତାର ବନ୍ଧୁବାନ୍ଧବମାନଙ୍କୁ ଏ ବିଷୟରେ ଜଣାଇବା ଉଚିତ । ସେଥିପାଇଁ ବନ୍ଧୁକୁ ଧରି ସେ ତାର ଶ୍ୱଶୁର ଘରକୁ ଗଲା । ସେଠାରେ ରହଣି କାଳରେ ରାଜପୁତ୍ର ସେଠାର ରାଜକନ୍ୟାକୁ ଦେଖି ଭୋଳ । ସେ ତ ଅତ୍ୟନ୍ତ ସୁନ୍ଦରୀ । ତାକୁ ବିବାହ ପାଇଁ ରାଜକୁମାର ପାଗଳ । ବନ୍ଧୁର ମାନସିକ ଅବସ୍ଥା ଦେଖି ବଣିକପୁଅ ବ୍ୟସ୍ତ । ସେ ସମସ୍ତ କଥା ରାଜାପୁଅଠାରୁ ଶୁଣିଲା । କିପରି ତାକୁ ରାଜକୁମାରୀ ସାଥିରେ ବିବାହ କରିବ ସେଇଟା ତାର ଚିନ୍ତା । ସେଥିପାଇଁ ସେ ତାର ସ୍ତ୍ରୀକୁ ରାଜକୁମାରୀ ପାଖକୁ ପଠାଇଲା । ତା ସ୍ତ୍ରୀକୁ ସେ ବାରମ୍ବାର କହିଲା—ରାଜାପୁଅର ଭଲ ଗୁଣ ଗାଉଁଲ ଜରିବୁ । କୌଣସି ଖରାପ ଗୁଣ ବିଷୟରେ କିଛି କହିବୁ ନାହିଁ ।" ବଣିକ

ପୁଅର ସ୍ତ୍ରୀ ଗଲା । ସ୍ୱାମୀ କଥା ମାନି ରାଜକୁମାରୀ ଆଗରେ ରାଜକୁମାର ଗୁଣକୀର୍ତ୍ତନ କଲା ।

ରାଜାପୁଅଟି ଖୁବ୍ ସୁନ୍ଦର । ତାର ଗୁଣ ଏତେ ଭଲ । ଏକଥା ରାଜକୁମାରୀ ଦେଖି ରାଜକୁମାରକୁ ବିବାହ କରିବାକୁ ତାର ଏକା ଜିଦ୍ । ଏକଥା ରାଜାଙ୍କ କାନରେ ପଡ଼ିଲା । ରାଜା ପୁଅକୁ ରାଜାଝିଅ ବିଭା ହେବ । ଏଥିରେ ରାଜାଙ୍କର ଅମଙ୍ଗ ହେବାର କିଛି ନ ଥିଲା । ବରଂ ଝିଅ ତାଙ୍କର ସୁଖରେ ରହୁ । ତାହା ରାଜାଙ୍କର ଇଚ୍ଛା । ସେଥିରେ ସେ କାହିଁକି ଅନ୍ତରାୟ ହେବେ । ତେଣୁ ସେମାନଙ୍କର ବିବାହ ହୋଇଗଲା । ଦୁଇ ବନ୍ଧୁ ସେମାନଙ୍କର ସ୍ତ୍ରୀମାନଙ୍କୁ ଧରି ନିଜ ରାଜ୍ୟକୁ ଫେରି ଆସିଲେ ।



# ଗଉଡ଼ ଓ ଗାଈ

ଏକଦା ଗଉଡ଼ଟିଏ ଥିଲା । ବାହା ହେବାକୁ ବର ପୋଷାକ ପିନ୍ଧି ପାଲିଙ୍କିରେ ବସି ଯାଉଥାଏ । ସାଥିରେ ତାର ବନ୍ଧୁ-ବାନ୍ଧବ । ସେମାନେ ତାର ବରଯାତ୍ରୀ । ସମସ୍ତେ ଶୋଭାଯାତ୍ରାର ଅଂଶୀଦାର । ମନରେ ସେମାନଙ୍କର ଆନନ୍ଦ । ସମସ୍ତେ ଉଲ୍ଲସିତ । ଉତ୍ଫୁଲ୍ଲ । ବାଟରେ ପୋଖରୀଟିଏ ପଡ଼ିଲା । ବରଟି ଶୁଣିଲା, ସତେ ଯେମିତି କିଏ ତାକୁ କହୁଛି—"ହେ ଆନନ୍ଦରେ ବିଭୋର ବର । ତୁ କନ୍ୟା ଆଣି ଯାଉଛୁ । ମନରେ ତୋର ଅଶେଷ

ଆନନ୍ଦ । ମୋତେ ଚାହିଁ ଦେଖ । ମୁଁ ପଙ୍କରେ ଆବଦ୍ଧ । ମୋର ଦୁଃଖ ଓ ଯନ୍ତ୍ରଣାର ସୀମା ନାହିଁ । ମୋତେ ଟିକଏ ଦୟା କର । ଏଥିରୁ ମୋତେ ଟିକେ ଉଦ୍ଧାର କରି ଦେ ।” ବରଟି ଏହା ଶୁଣି ପଦାକୁ ଚାହିଁଲା । ସେ ଦେଖିଲା ପୋଖରୀକୂଳରେ ବହୁତ ପଙ୍କ । ସେଥିରେ ଗାଈଟି ପୋତି ହୋଇପଡ଼ିଛି । ସେଥିରୁ ସେ ବାହାରି ପାରୁ ନାହିଁ । ଗାଈଟି ତା ଆଡ଼କୁ ବ୍ୟାକୁଳ ନୟନରେ ଚାହିଁଛି । ସେ ଯାହା ଶୁଣିଛି, ସେସବୁ ଏଇ ଗାଈର ବ୍ୟାକୁଳ କରୁଣ ନିବେଦନ । ଏହା ସେ ଅନୁମାନ କଲା । ଗାଈର ଅବସ୍ଥା ଦେଖି ସେ ବିଚଳିତ । ମନରେ ତାର ଅଶେଷ ଦୟା । ଉଦ୍ଧାର କରିବା ପାଇଁ ତାର ଘୋର ଇଚ୍ଛା । କିନ୍ତୁ ସେଥିପାଇଁ ତାକୁ ପଙ୍କରେ ପଶିବାକୁ ହେବ । ଫଳରେ ତାର ବର ପୋଷାକ ସବୁ ପଙ୍କିଳ ହୋଇଯିବ । ସେ କନ୍ୟା ଘରକୁ ଯାଇପାରିବ ନାହିଁ । ସେଥିପାଇଁ ସେ ଦେଖିଲା ଯେ, ଗାଈର ଅନୁରୋଧ ରକ୍ଷା କରିବା ତା ପକ୍ଷରେ ଅସମ୍ଭବ । ସେଥିରୁ ସେ ନିବୃତ୍ତ ରହିଲା । ସେକଥା ସେ ଗାଈକୁ ରୋକ୍‌ଠୋକ୍ ଭାବରେ ଜଣାଇଦେଲା ।

ବରଟି ଭଲ କାମରେ ଅନୁକୂଳ କରି ଯାଉଛି । ତେଣୁ ତାର ମନରେ ଦୟା ବହୁତ ଥିବ । ତାକୁ ସେ ନିଶ୍ଚୟ ସାହାଯ୍ୟ କରିବ । ଏହାଥିଲା ଗାଈର ଆଶା । ସେଥିପାଇଁ ବର ପାଖରେ ଥିଲା ତାର ନିବେଦନ ଓ ପ୍ରାର୍ଥନା । ବରଠାରୁ ରୁକ୍ଷ ନିର୍ଘଣବାଣୀ ଶୁଣି ସେ ଆଶ୍ଚର୍ଯ୍ୟ । ମନରେ ତାର ଅଶେଷ ଆଘାତ ଲାଗିଲା । ସେ ଖୁବ୍ ରାଗିଗଲା । ସେ ସମ୍ଭାଳି ପାରିଲା ନାହିଁ । ସାଥି ସାଥି ସେ ବରକୁ ଅଭିଶାପ ଦେଲା—“ତୁ ଆନନ୍ଦରେ ବିବାହ କରିପାରିବୁ ନାହିଁ । କନ୍ୟାକୁ ଛୁଇଁବା ମାତ୍ରେ ଗଧ ପାଲଟି ଯିବୁ ।”

ଏ କଥା ଶୁଣି ବରଟି ଗୁଣ୍ଡିଆଁ । ଭୟରେ ଥରହର । ସେ ଆଉ ଆଗେଇବାକୁ ସାହସ କଲା ନାହିଁ । ପାଲଙ୍କି ବାହକଙ୍କୁ କହି ପାଲିଙ୍କି ରଖାଇଲା । ସେଥିରୁ ଓହ୍ଲାଇ ଧାଇଁଲା ଗାଈ ପାଖକୁ । ତାକୁ ଟାଣି ଟାଣି ପଙ୍କରୁ ପଦାକୁ ଘେନି ଆସିଲା । ଗାଈଟି ଏବେ ମୁକ୍ତ । ମନରେ ତାର ଆଶ୍ୱସ୍ତି । ଆନନ୍ଦ । ଗଜଡଟି ଏହା ଦେଖିଲା । ଏଇ ସୁଯୋଗରେ ସେ ଅଭିଶାପ ଫେରାଇ ନେବାକୁ ଗାଈକୁ ଅନୁରୋଧ କଲା । ଗାଈ କହିଲା— "ଥରେ ଅଭିଶାପ ଦେଲେ ତାହା ଅଟଳ ହୋଇଯାଏ । ଫେରିବାର ପ୍ରଶ୍ନ ଉଠେ ନାହିଁ ।" ଏହାଶୁଣି ଗଜଡ଼ ବିଚରାଟି ବହୁତ ନେହୁରା ହେଲା । ଅନୁନୟ ବିନୟ ହୋଇ ନିବେଦନ କଲା । ଶେଷକୁ ତାର ଗୋଡ଼ତଳେ ପଡ଼ି ରହିଲା । ବରଟି ଅବସ୍ଥା ଅତି ଶୋଚନୀୟ । ଏହା ଦେଖି ଗାଈଟିର ଦୟା ହେଲା । ସେ କହିଲା—"ସବୁ ଅଭିଶାପ ଅଣଲେଉଟା । ତଥାପି ତାହାର ଲାଘବ ସମ୍ଭବପର । ତୁମେ ଗଧ ହେବ । କିନ୍ତୁ ତମର ସ୍ତ୍ରୀ ପ୍ରଚେଷ୍ଟାରେ ତମେ ତମର ମଣିଷ ରୂପ ଫେରି ପାଇବ ।" ଏଇ ଯେଉଁ ସାନ୍ତ୍ୱନା ଟିକକ ମିଳିଲା, ତାହାହିଁ ତାହାର ପାଥେୟ । ତାପରେ ବରଟି ପାଲଙ୍କି ପାଖକୁ ଫେରି ଆସିଲା । ଯାହା ଘଟିଥିଲା ସେ ସବୁ ସାଙ୍ଗମାନଙ୍କୁ କହିଲା । ଏକଥା ଶୁଣି ସମସ୍ତଙ୍କର ମନସ୍ତାପ । ଯାହାହେଉ, କନ୍ୟା ଘରେ ସେମାନେ ପହଞ୍ଚିଗଲେ । ବିବାହ ଉତ୍ସବ ଆରମ୍ଭ ହେଲା । ବିବାହ ପ୍ରଥାରୁ ବରଟି ତା ଅଙ୍ଗୁଠି ସାହାଯ୍ୟରେ କନ୍ୟାର ମଥାରେ ସିନ୍ଦୂର ଲଗାଇବାର କଥା । ଏଇ ବିଧି ଯେମିତି ପାଳିତ ହୋଇଛି ବରଟି ଗୋଟିଏ ଗଧରେ ପରିଣତ ହୋଇଗଲା । ବରଯାତ୍ରୀମାନେ ସମସ୍ତେ ହତୋତ୍ସାହ । ଦୁଃଖରେ ମ୍ରିୟମାଣ । ବ୍ୟଥିତ ।

ବିଚଳିତ । କନ୍ୟାର ବାପାମା, ବନ୍ଧୁବାନ୍ଧବ ଏପରି ଅସ୍ୱାଭାବିକ ଅବସ୍ଥା ଦେଖି ବ୍ୟସ୍ତ । ତାଙ୍କ ଝିଅକୁ ବିବାହ ଦେବାକୁ ସିଧା ମନା କରିଦେଲେ । କିନ୍ତୁ ଝିଅଟି କହିଲା--କୌଣସି କାରଣରୁ ଠାକୁର ଯଦି ତାକୁ ଏପରି ସ୍ୱାମୀଟିଏ ଦେଲେ, ସେ ତାକୁ କିପରି ଛାଡ଼ିବ ? ତାର ବନ୍ଧୁବାନ୍ଧବମାନେ ଏଥିରୁ ଓହରି ଯିବାକୁ ତାକୁ ବହୁତ ବୁଝାଇଲେ । ସେ ସବୁ ତା ପକ୍ଷରେ ନିରର୍ଥକ । ସେ ତା ନିଷ୍ପତ୍ତିରେ ଅଟଳ । ଅବିଚଳିତ । ତାର ଗଧ ସାଥିରେ ବିବାହ ହେଲା । ବରଯାତ୍ରୀମାନେ ଯେତେବେଳେ ଘରକୁ ଫେରିଲେ, ସେ ସେମାନଙ୍କ ସାଥିରେ ତାର ସ୍ୱାମୀ ଘରକୁ ଆସିଲା । କିନ୍ତୁ ସେ ଗୋଟିଏ ଗଧକୁ ବିବାହ କରିଥିବାରୁ ଶ୍ୱଶୁର ଘରେ ବି ସମସ୍ତେ ନାକ ଟେକିଲେ । ଅଣ୍ଟାରେ ପୋତି ପକାଇଲେ । ସେ ସବୁ ଅସହ୍ୟ । ବରଦାସ୍ତ ଅସମ୍ଭବ । ଲୋକଙ୍କର ବିଦ୍ରୂପ ଏଡ଼େଇ-ବାକୁ ହେବ । ସେଥିପାଇଁ ସେ ସେଠାରେ ରହିବ ନାହିଁ । ଅନ୍ୟ ଗୋଟିଏ ରାଜ୍ୟକୁ ଚାଲିଯିବ ଏହା ସେ ମନେ ମନେ ସ୍ଥିର କଲା । ବାଟରେ ଯାହା ଦରକାର ହେବ, ସେତକ ଧରି ସେ ବାହାରି ପଡ଼ିଲା । ସାଥିରେ ତାର ଗଧ । ତାକୁ ସେ ଅଡ଼େଇ ଅଡ଼େଇ ନେଇ ଚାଲିଲା ।

ଯାଉ ଯାଉ ଦିନେ ସେ ଗୋଟିଏ ପୋଖରୀ କୂଳରେ ପହଞ୍ଚିଗଲା । ବାମ୍ପୀଟିଏ ତାକୁ ଲାଗିଛି । ସେଇ ପୋଖରୀ କୂଳରେ ଚରିବା ପାଇଁ ସେ ଗଧକୁ ଫିଟେଇଦେଲା । ତାପରେ ସାଙ୍ଗରେ ଆଣିଥିବା ଖାଦ୍ୟ ଖାଇବା ପାଇଁ ସେ ସେଇଠି ବସିପଡ଼ିଲା । ପୋଖରୀକୁ ଲାଗି ରାଜାଙ୍କର ଚାଷ ଜମି । ତାଙ୍କର କୋଡ଼ିଏ ଜଣ ହଳିଆ ସେ ଜମିରେ ହଳ କରୁଥାଆନ୍ତି । ଦି'ପହର ଗଡ଼ିଗଲା । ସେ ପର୍ଯ୍ୟନ୍ତ ତାଙ୍କ ଖାଇବା କେହି ଆଣିଲେ ନାହିଁ । ସେଥିପାଇଁ

ସେମାନେ ଗରଗର । ବିରକ୍ତ । ଯେତିକ ଯେତିକ ବେଳ ଗଡ଼ି ଯାଉଥାଏ, ସେତିକ ସେତିକ ସେମାନଙ୍କ ରାଗ ବଢ଼ୁଥାଏ । ଶେଷକୁ ସେମାନେ ଶପଥ ନେଲେ, ଅଲସୁଆମି କରି ଡେରିରେ ଯେ ଖାଦ୍ୟ ଆଣିବ, ତାକୁ ସେମାନେ ପିଟିବେ । ତା ପରେ ପରେ ରଜାଙ୍କର ଦାସୀଟିଏ ଆସିଲା । ମୁଣ୍ଡରେ ତାର ଗୋଟିଏ ଟୋକେଇ । ସେଥିରେ ହଳଆଙ୍କର ଖାଦ୍ୟ ସାମଗ୍ରୀ । ସାଙ୍ଗରେ ତାର ପିଲାଟିଏ । ସେ ଦୌଡ଼ି ଦୌଡ଼ି ତା ମା ସାଥିରେ ଆସୁଥିଲା । ଏହା ହଳଆମାନେ ଦେଖିଲେ । ସେମାନଙ୍କର ରାଗ ଉଭେଇଗଲା । ସେମାନେ ଶାନ୍ତ । ପ୍ରକୃତିସ୍ଥ । ଦାସୀଟି ତରତର ହୋଇ ଟୋକେଇଟି ଆଣିଲା । ସେମାନଙ୍କ ପାଖରେ ରଖିଦେଲା । ତା ପରେ ସେମାନଙ୍କ ପାଇଁ ପାଣି ଆଣିବାକୁ ସେ ବାମ୍ଫୀ ପାଖକୁ ଗଲା । ପାଣି ପାଇଁ ମାଠିଆଟିଏ ବାମ୍ଫୀରେ ପକାଇବାକୁ ଯାଉଛି, ସେ ଦେଖିଲା ଯେ, ଗୋଟିଏ ବିବାହ ଶୋଭାଯାତ୍ରା ଆସୁଛି । ସେଥିରେ ସଙ୍ଗୀତ ପରିବେଷଣ ହେଉଥାଏ । ସୁନ୍ଦର ବାଜା ବାଜୁଥାଏ । ତାହା ଅତ୍ୟନ୍ତ ମନୋମୁଗ୍ଧକର । ହୃଦୟସ୍ପର୍ଶୀ । ଦାସୀଟିର ମନ ସେଆଡ଼କୁ ଟାଣି ହୋଇଗଲା । ତା ଛଡ଼ା ଶୋଭାଯାତ୍ରାର ସାଜସଜ୍ଜା ବି ଅତି ଚମତ୍କାର । ସେ ଶୋଭାଯାତ୍ରାକୁ ଦେଖି ଅତ୍ୟନ୍ତ ତନ୍ମୟ । ସେଠାରୁ ତାର ଆଖି ଆଉ ଫେରାଇ ଆଣିପାରିଲା ନାହିଁ । ଏଣେ ଶୋଷିଲା ଓ ଭୋକିଲା ହଳଆମାନଙ୍କୁ ଆଉ ଅପେକ୍ଷା କରି ରଖିବାକୁ ସେ ଖିଆଲ ନ ଥାଏ । କେଣୁ ଆଖି ତାର ଶୋଭାଯାତ୍ରା ଉପରେ ରଖିଲା । ଏଣେ ସେ କୂଅ ବଉଡ଼ିକୁ ମାଠିଆରେ ବାନ୍ଧିବାକୁ ଲାଗିଲା । ଭୁଲ୍‌ରେ ମାଠିଆ ପରିବର୍ତ୍ତେ ତା ପୁଅ ବେକରେ ବଉଡ଼ି ବାନ୍ଧିଦେଲା । ତାକୁ ବାମ୍ଫୀ ଭିତରକୁ ଆସ୍ତେ ଆସ୍ତେ ଖସାଇଲା । ଯେତେବେଳେ ତାକୁ ଉପରକୁ ଟାଣି

ଆଣିଲା, ସେ ଦେଖିଲା ମାଠିଆକୁ ସେ କୂଅରେ ପକାଇ ନାହିଁ । ତା ପରିବର୍ତ୍ତେ ନିଜ ପୁଅକୁ ବାନ୍ଧି ପକାଇ ଦେଇଛି । ଫଳରେ ଫାଶୀ ପାଇ ପୁଅଟି ତାର ମୃତ । ନିଜ ପୁଅର ମୃତ୍ୟୁ ସେ ସହି ପାରିଲା ନାହିଁ । ସେ ମର୍ମାହତ । ବ୍ୟଥିତ । ବିବ୍ରତ । ଖାଲି ସେତିକି ନୁହେଁ । ସେ ତା ପୁଅକୁ ହତ୍ୟା କରିଛି । ସେଥିପାଇଁ ନିଶ୍ଚୟ ଅଭିଯୋଗ ହେବ । ସେଥିରୁ ତାର ରକ୍ଷା ନାହିଁ । ଫଳରେ ସେ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେବ । ଏହା ତା ମନକୁ ଆସିଲା । ସେ ଗୁନିଆ । ଭୟରେ ଥରି ଉଠିଲା । ସେଥିରୁ କିପରି ରକ୍ଷା ପାଇବ, ତାହାହିଁ ତାର ଚିନ୍ତା । ବହୁ କଥା ସେ ଭାବିଲା । ଶେଷକୁ ତା ମନକୁ ଉପାୟଟିଏ ଜୁଟିଲା । ସେ ମଲାପିଲାକୁ କାନ୍ଧରେ ପକାଇଲା । ହଳିଆମାନଙ୍କ ପାଖକୁ ଧାଇଁଲା । ସେମାନଙ୍କ ପାଇଁ ଆଣିଥିବା ଖାଇବା ଜିନିଷ ସବୁ ତଳେ ବିଞ୍ଚି ଦେଲା । ତାପରେ ତାର ମଲା ପିଲାକୁ ସେ କାନ୍ଧରେ ପକାଇ ଧାଇଁଲା । ରାଜାଙ୍କ ପାଖରେ ସେ ଯାଇ ଅଭିଯୋଗ କଲା— ଖାଇବା ଜିନିଷ ନେବାରେ ତାର ଡେରି ହେଲା । ସେଥିପାଇଁ ହଳିଆମାନେ ରାଗରେ ଖାଇବା ଜିନିଷ ସବୁ ଫିଙ୍ଗିଦେଲେ । ତାକୁ ପିଟିଲେ । ପିଲାକୁ ବି ତାର ପିଟିଲେ । ଫଳରେ ପିଲାଟି ମରିଗଲା । ସେ ଆହୁରି କହିଲା ଯେ ପାଖରେ ଗୋଟିଏ ସ୍ତ୍ରୀଲୋକ ଛଡ଼ା କେହି ନ ଥିଲେ । ସେ ସେଠାରେ ଗଧ ଚରାଉଥିଲା । ଯାହା ଘଟିଯାଇଛି, ସେ ସବୁ ହୁଏତ ଦେଖିଥିବ ।

ଏଇ ଅଭିଯୋଗ ଅତ୍ୟନ୍ତ ଗୁରୁତର । ଏହାହିଁ ରାଜା ଅନୁଭବ କଲେ । ଆଦେଶ ଦେଲେ—"ଯାଅ । ଶୀଘ୍ର ହଳିଆମାନଙ୍କୁ ଧରିଆଣ ।" ରାଜାଙ୍କ ଆଦେଶରେ ଶୀଘ୍ର ହଳିଆମାନଙ୍କୁ ତାଙ୍କ ନିକଟରେ ହାଜର କରାଗଲା । "ଘଟଣା କ'ଣ ?"

ତାହାହେଲା ରାଜାଙ୍କର ସେମାନଙ୍କୁ ପ୍ରଶ୍ନ । ସେମାନେ ଯାହା କହିଲେ, ରାଜା ବିଶ୍ୱାସ କରିପାରିଲେ ନାହିଁ । ସେଥିପାଇଁ 'ସିଙ୍ଗବୋଙ୍ଗା' ଦେବତାଙ୍କ ପାଖରେ ହଲପ କରି ସବୁକଥା କହିବାକୁ ସେମାନଙ୍କୁ ରାଜା ଆଦେଶ ଦେଲେ । ହଳିଆମାନେ ଅତି ଭକ୍ତି ସହକାରେ ସତ୍ୟ କହିବା ପାଇଁ ଶପଥ ନେଲେ । ଠାକୁରଙ୍କ ନାଁ ଧରି ଯାହା ସବୁ ଘଟିଥିଲା ସେ ସବୁ ଗୋଟି ଗୋଟି କରି କହିଲେ । ତା ଛଡ଼ା ସେମାନେ କହିଲେ ଯେ, ସ୍ତ୍ରୀଲୋକଟି ଭ୍ରମ୍‌ବଶତଃ ତା ପିଲା ବେକରେ ଦଉଡ଼ି ବାନ୍ଧି କୂଅକୁ ପକାଇବା ଫଳରେ ପିଲାର ମୃତ୍ୟୁ ହୋଇଛି । ସେମାନଙ୍କୁ ହତ୍ୟାକାରୀ ବୋଲି ଯାହା କୁହା ହେଉଛି, ତାହା ଅସତ୍ୟ । ଏକଥା ଶୁଣି ସାରିଲା ପରେ ରାଜା ପଚାରିଲେ—"ତୁମେ ଯାହା କହୁଛ, ସେ ସମ୍ପର୍କରେ ତମର ସାକ୍ଷୀ କିଏ ଅଛନ୍ତି କି ?" ସେମାନେ କହିଲେ— "ସେଠାରେ ଆମ ଗାଁର କେହି ଲୋକ ନ ଥିଲେ । ବାମ୍ପୀ ମୂଳରେ ଗୋଟିଏ ଅଜଣା ସ୍ତ୍ରୀଲୋକ ବସି ତା ଗାଧକୁ ଚରାଉଥିଲା । ହୁଏତ, ସେ ଏସବୁ ଘଟଣା ଦେଖିଥିବ ।"

ଦୁଇଜଣ ସିପାହୀଙ୍କୁ ରାଜା ପଠାଇଲେ । ତାଙ୍କୁ ସତର୍କ କରାଇ ରାଜା କହିଲେ—"ତୁମ୍ଭେମାନେ ଯାଅ । ବାମ୍ପୀ ମୂଳରେ ଗଧ ଚରାଉଥିବା ସ୍ତ୍ରୀ ଲୋକଟିକୁ ଡାକିଆଣ । ହୁସିଆର । ତାପ୍ରତି ଖରାପ ବ୍ୟବହାର କରିବ ନାହିଁ । ସେ ଜଣେ ଭଦ୍ର ମହିଳା । ସେଇଭଳି ତାକୁ ସମ୍ମାନ ଦେବ ।" ସିପାହୀମାନେ ଗଲେ । ଅପରିଚିତା ସ୍ତ୍ରୀ ଲୋକଙ୍କୁ ରାଜାଙ୍କ ଆଦେଶ ଜଣାଇଲେ । ତାଙ୍କୁ ରାଜାଙ୍କ ନିକଟରେ ତୁରନ୍ତ ହାଜର ହେବାକୁ ହେବ । ସେଥିପାଇଁ ଶୀଘ୍ର ବାହାରିବାକୁ ସେମାନଙ୍କର ଅନୁରୋଧ ଥିଲା । ଅପରିଚିତା ସ୍ତ୍ରୀଲୋକଟି ସେମାନଙ୍କ କଥାରେ ପ୍ରତିବାଦ କଲା ନାହିଁ । ବରଂ

ଆସିବା ପାଇଁ ଗଧ ଆଣିବାକୁ ବାହାରିଲା । "ତୁମେ କେବଳ ରାଜାଙ୍କ ପାଖକୁ ଆସ । ଗଧଟି ଏଇଠି ଚରୁଥାଉ । ତାର କେହି କିଛି କ୍ଷତି କରିବେ ନାହିଁ ।" ଏହା ଥିଲା ସିପାହୀମାନଙ୍କର ପରାମର୍ଶ । ଅଭିବ୍ୟକ୍ତ । ସ୍ତ୍ରୀ ଲୋକଟି ସେମାନଙ୍କ କଥା ଗ୍ରହଣ କଲା ନାହିଁ । ବରଂ କହିଲା—"ମୁଁ ସୁଆଡ଼େ ଯିବି, ଗଧକୁ ନେଇ କରି ଯିବି ।" ତା ପରେ ସେ ଗଧକୁ ଧରି ରାଜାଙ୍କ ନିକଟକୁ ଆସିଲା । ରାଜା ତାକୁ ଦେଖିଲେ । କ'ଣ ସେ ଦେଖିଥିଲା, ସେସବୁ କହିବାପାଇଁ ରାଜା ତାକୁ ଜଣେଇଦେଲେ । ତାପରେ କହିଲେ— ମିଲର ମୃତ୍ୟୁ ସମ୍ପର୍କରେ ତାଙ୍କର ଦାସୀ ଗୋଟିଏ କଥା କହୁଛି, ଅଥଚ ତାଙ୍କ ହଳିଆମାନେ ଆଉ ଗୋଟିଏ କଥା କହୁଛନ୍ତି । ତମେ ପ୍ରକୃତ ଘଟଣା ଦେଖିଛ । ଏଥିରେ ଉଭୟ ଏକମତ । ତେଣୁ ଯାହା ଦେଖିଛ, ତାହା ତୁମକୁ କହିବାକୁ ହେବ ।" ଗଜ୍ଜଡ଼ଟିର ସ୍ତ୍ରୀ ଭଦ୍ର । ନମ୍ର । ସେ ଉତ୍ତର ଦେଲା— "ମୁଁ ଗଧକୁ ଧରି ହଲପ କରି ସବୁ କଥା କହିବି । ଏହା ଯଦି ସତ୍ୟ ହୋଇଥିବ, ଗଧଟି ମୋର ମଣିଷ ହୋଇଯିବ । ମୁଁ ଯଦି ମିଛ କହେ, ଗଧଟି ଯେମିତି ଅଛି ସେମିତି ରହିବ ।" ରାଜା କହିଲେ—"ତୁମେ ଯାହା କହିବ, ସେଇ ଅନୁସାରେ ମକଦ୍ଦମା ନିଷ୍ପତ୍ତି ହେବ ।" ତାପରେ ଗଜ୍ଜଡ଼ୁଣୀଟି ଯାହା ଦେଖିଥିଲା, ସେ ସବୁ କହିବାକୁ ଆରମ୍ଭ କଲା । ଦ୍'ପହର ଖାଇବା ଠିକ୍ ସମୟରେ ପହଞ୍ଚିଲା ନାହିଁ । ସେଥିପାଇଁ କପର ହଳିଆମାନେ ରାଗିଲେ । ଆଉ ପାଣି ଆଣିବାକୁ ଦାସୀଟି କପର ବାମ୍ପୀ ପାଖକୁ ଗଲା । ଭୁଲ୍‌ବଶତଃ କପର ସେ ତା ପୁଅ ବେକରେ ଦଉଡ଼ି ବାନ୍ଧି ତାକୁ ମାରି ପକେଇଲା । ଆଉ କପର ସେ ନେଇଁଥିବା ଖାଦ୍ୟ ସବୁ ବାଣ୍ଟି ପକାଇ ପଳାଇ ଆସିଲା । ତା ସେ ଗୋଟି ଗୋଟି କରି

କହିଲା । ତାପରେ ସେ ପ୍ରାର୍ଥନା କଲା—"ମୁଁ ଯଦି ମିଛ କହିଥିବି ଗୁରୁଦେଓ ମତେ ଦଣ୍ଡ ଦେବେ । ମୁଁ ଯଦି ସତ କହିଥିବି, ଏ ଗଧ ମଣିଷ ହୋଇଯିବ ।" ଏତକ କହି ସେ ତାର ହାତ ଗଧ ପିଠିରେ ରଖିଲା । ସାଙ୍ଗେ ସାଙ୍ଗେ ଗଧଟି ମଣିଷର ରୂପ ନେଲା ।

ରଜାଙ୍କର ହୃଦ୍‌ବୋଧ ପାଇଁ ଏହା ଥିଲା କଠିନ ପରୀକ୍ଷା । ରଜା ଦାସୀଟିକୁ ପଚାରିଲେ—"ମିଥ୍ୟା ଅଭିଯୋଗରେ ହଳଆ-ମାନଙ୍କୁ ହଲଚଲାନ୍ତ କରିବା ପାଇଁ ଏହା ତୋର ସ୍ଥାନ ଚକ୍ରାନ୍ତ ।" ଦାସୀଟିର ଉତ୍ତର ଦେବାର କିଛି ନ ଥିଲା । ପଦୁଟିଏ କଥା ମଧ୍ୟ ତା ପାଟିରୁ ବାହାରିଲା ନାହିଁ । ମୃତ ପିଲାଟିକୁ ଧରି ସେ ସେଠୁ ଚାଲିଗଲା ।

ଗଜଡ଼ ତାର ପୂର୍ବ ରୂପ ଫେରି ପାଇଲା । ସେ ଓ ତାର ବିଶ୍ୱସ୍ତ ସ୍ତ୍ରୀ ତାଙ୍କ ଘର ଲୋକଙ୍କ ପାଖକୁ ଆଉ ଫେରିଲେ ନାହିଁ । ସେଇଠି ଗୋଟିଏ ବୃଦ୍ଧୀ ପାଖରେ ଗଜଡ଼ଟି କାମ କଲା । ସେମାନେ କିଛି ପଇସା ରଖିଲେ । ଅଳ୍ପଦିନ ଭିତରେ ସେମାନେ ଜମି କିଣି ସୁବିଧାରେ ଓ ଆରାମରେ ରହିଲେ । ସେଇଦିନୁ ଗଉଡ଼ମାନେ ଗାଈମାନଙ୍କୁ ଭଲ ବ୍ୟବହାର କରି ଆସୁଛନ୍ତି ।

———

## ଝାଡଗ୍ରେଇ ସ୍ତ୍ରୀ

ଏକଦା ଗାଁରେ ସଭା ହେଉଥାଏ । ଜଣେ ଲୋକ ଜାମା ଜୋଡ଼ ହୋଇ ସଭାକୁ ବାହାରିଲା । ଘର ପଛପଟେ ତାର ଝାଡଗଡ଼ା । ତ୍ରେଇ ବାଟେ ସେ ଯାଉଥାଏ । ଏତିକିବେଳେ ତା'ର

ସୃଜବଣୀ ଟୋକେଇଏ ଗୋବର ଆଣି ଖତ ଗଦାରେ ପକେଇ-ଦେଲ । ଦୁର୍ଭାଗ୍ୟକୁ କିଛି ଗୋବର ଛିଟିକି ଆସି ତା ଲୁଗାରେ ପଡ଼ିଗଲ । ଫଳରେ ଲୁଗାପଟା ତାର ଅସନା ଓ ମଇଳା ହୋଇ ଗଲ । ସେଇ ଅବସ୍ଥାରେ ସଭାକୁ ଗଲେ, ଲୋକେ ଦେଖି ହସି ନାକ ଟେକିବେ । ଲୁଗା ବଦଳାଇବା ଛଡ଼ା ତାର ଆଉ ବାଟ ନାହିଁ । ସେଇଠୁ ସେ ଘରକୁ ଫେରି ଆସିଲ । ଘରେ ମଇଳା ଲୁଗା ବାହାର କଲ । ତାକୁ ଗୋଟିଏ ହାଣ୍ଡିରେ ରଖିଲ । ତା ମୁହଁରେ କିଛି ପତ୍ର ରଖି ଘୋଡ଼ାଇ ଦେଲ । ସେ ଯେଉଁ ଘରେ ଶୁଏ, ସେ ଘର ସୃଲରେ ତାକୁ ଝୁଲାଇ ଦେଲ ।

ଏହା ଭିତରେ ଦୁଇ ତିନି ଦିନ ସୃଲଗଲ । ସେଦିନ ହଠାତ୍ ତା ସ୍ତ୍ରୀର ନଜର ସେ ପାତ୍ର ଉପରେ ପଡ଼ିଗଲ । ସେଥିରେ କ'ଣ ଅଛି, ଜାଣିବାକୁ ସେ ଉଚ୍ଛନ୍ନ । ବାରମ୍ବାର ସେ ଏ ବିଷୟରେ ସ୍ୱାମୀକୁ ପଚ୍ଚରିଲ । ସ୍ୱାମୀ ତାର ନିରବ । ଏ ସମ୍ପର୍କରେ ହୁଁ କି ଚୁଁ ହେଲ ନାହିଁ । ଏହା ଦେଖି ସ୍ତ୍ରୀର ଉତ୍କଣ୍ଠା ଅଧିକ ହେଲ । ସେ ସ୍ୱାମୀକୁ ତାର ବସାଇ ଉଠାଇ ଦେଲନାହିଁ । ସବୁବେଳେ ତାର ସେଇ ପ୍ରଶ୍ନ—ଏ ହାଣ୍ଡିରେ କ'ଣ ଅଛି ? ବାରମ୍ବାର ସ୍ତ୍ରୀଟି ବିରକ୍ତ କରିବାରୁ ଲୋକଟି କହିଲ—"ସ୍ତ୍ରୀ ଲୋକ କୌଣସି ଗୁପ୍ତ କଥା ପେଟରେ ରଖି ପାରନ୍ତି ନାହିଁ । ମୋର ଭୟ ତମକୁ କହିଦେଲେ, ତୁମେ ପଦାରେ କଥାଟା ପକାଇ ଦେବ । ସେଥିପାଇଁ ମୁଁ ତମକୁ କହୁ ନାହିଁ ।" ସ୍ତ୍ରୀ ତାର ପ୍ରତିଜ୍ଞା କଲ । ସେ କହିଲ—"ଏ କଥା ମୁଁ କାହାକୁ କେବେ ହେଲେ କହିବି ନାହିଁ । ମୋ ସ୍ୱାମୀର ଗୁପ୍ତ କଥା ମୋ ନିଜର ଗୁପ୍ତ କଥା । ଏ ବିଷୟ ମୁଁ କ'ଣ ଜାଣି ନାହିଁ ।" ସ୍ୱାମୀଟି କହିଲ—"ଦେଖ ତୁମେ ପ୍ରତିଜ୍ଞା କଲ ବୋଲି ମୁଁ କହୁଛି ।

ଏକଥା ଅତି ଗୋପନୀୟ । ମୁଁ ଜଣକୁ ହତ୍ୟା କରିଛି । କଥାଟା ଜଣା ପଡ଼ିବ ନାହିଁ ବୋଲି ମୁଁ ତା ମୁଣ୍ଡକୁ ଏ ହାଣ୍ଡିରେ ଲୁଚାଇ ରଖିଛି । ଖବରଦାର ! ଏକଥା ପ୍ରକାଶ କଲେ, ମୋ ଜୀବନ ବରବାଦ ହୋଇଯିବ ।"

କିଛିଦିନ ସୁଖରେ ଚାଲିଗଲା । ହଠାତ୍ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ କଳହ ଲାଗିଗଲା । କଥାଟା ଅତି ଉଗ୍ର ହେବାରୁ ସ୍ୱାମୀଟି ସ୍ତ୍ରୀକୁ ପିଟିଲା । ଏଥିରେ ସ୍ତ୍ରୀ ଲୋକଟି ଅତ୍ୟନ୍ତ କ୍ଷୁବ୍ଧ । ପ୍ରତିହିଂସା ନେବା ପାଇଁ ସେ ବ୍ୟଗ୍ର । ସେ ଘରୁ ପଦାକୁ ଆସିଲା । ଗାଁ ମୁଖିଆ ପାଖରେ ହାଜର ହୋଇ କହିଲା—"ସ୍ୱାମୀ ମୋର ମଣିଷ ମାରିଛି । ଯାହାକୁ ମାରିଛି, ତାର ମୁଣ୍ଡ ଆଣି ଘରେ ଗୋଟେ ହାଣ୍ଡିରେ ସାଇତିଛି ।" ଏକଥା ଶୁଣି ଗାଁ ସାରା ଲୋକ ଚକିତ ହୋଇଗଲେ । ଘଟଣା ଅତି ସାଂଘାତିକ । ନରହତ୍ୟା କାରୀକୁ ଗାଁରେ ରଖିବା ଅନୁଚିତ । ଏହା ହେଲା ସର୍ବସମ୍ମତ ମତ । ଗାଁର ମୁଖିଆ ସହ ଗାଁବାଲା ଥାନାକୁ ଗଲେ । ପୋଲିସ ଆଗରେ ସମସ୍ତ କଥା ବୟାନ କଲେ । ପୋଲିସ ଦାରୋଗା ତଦନ୍ତ ପାଇଁ ଗାଁକୁ ଆସିଲେ । ଲୋକଟିକୁ ଗିରଫ କରି ରଖିଲେ । ତାପରେ ଚୁଲିରୁ ହାଣ୍ଡିଟି ଆଣି ତାକୁ ଦେଖିଲେ ଯେ, ସେଥିରେ ଗୋବର ଛିଟା ଲାଗିଥିବା ଲୁଗାଟିଏ ଅଛି । ସମସ୍ତେ ତାହା ଦେଖି ଅବାକ୍ । ଦାରୋଗା ରାଗିକରି ନିଆଁ । ମିଥ୍ୟା ଖବର ଦେଇଥିବାରୁ ଗାଁର ମୁଖିଆକୁ ଜୋରିମାନା କଲେ । ତାପରେ ଲୋକଟିକୁ ମୁକ୍ତ କରି ସେ ଚାଲିଗଲେ ।

ଲୋକଟିର ଏବେ ଗାଁରେ ସମ୍ମାନ ବଢିଗଲା । ସେ ସମସ୍ତଙ୍କୁ କହିଲା—"ମୁଁ ଯାହା କହୁଛି, ଶୁଣ । କେବେ ହେଲେ ସ୍ତ୍ରୀ

ଲୋକଙ୍କୁ ଗୁପ୍ତ କଥା କହିବ ନାହିଁ । ତାଙ୍କ ସାଥିରେ କଥା ହେଲା ବେଳେ ସାବଧାନ ରହିବ । ସେମାନେ ଗୁପ୍ତ କଥା ପେଟରେ ରଖି ପାରିବେ ନାହିଁ । ଦାଣ୍ଡରେ ପକାଇଦେବେ । ତମକୁ ଜଣେ ନା ଜଣେ ଅଯଥାରେ ଦୋଷୀ ବନେଇ ଦେବେ ।”

ସେଇଥିପାଇଁ ଆମେ ଶିକ୍ଷା ପାଇଛୁ ଯେ କୌଣସି କଥା ସ୍ତ୍ରୀ ଲୋକଙ୍କୁ କହିଲେ, ତା ପ୍ରକାଶ ପାଇବ । ଏହା ନିଃସନ୍ଦେହ ।



# ଗୂଢ଼ାର୍ଥ କଥା କହୁଥିବା ବର

ଏକଦା ଦୁଇଟି ଭାଇ ଥିଲେ । ଭଗବାଇ ବଡ଼ । କୋଷ ସାନ । ଭଗବାଇ ବିବାହିତ । ସାନ ବାଡ଼ୁଅ । ସାନର ବୟସ ହୋଇଗଲା । ତାକୁ ବଡ଼ଭାଇ ବିବାହ କରୁ ନାହିଁ । ଲୋକେ ଅପବାଦ ଦେବେ । ଏଇଟା ଭଗବାଇ ସ୍ତ୍ରୀର ଭୟ । ତେଣୁ ସେ ଦିନେ ଭଗବାଇକୁ ପଚାରିଲା—“କୋଷ ପାଇଁ କନ୍ୟା କେବେ ଦେଖିବ ?” କିନ୍ତୁ ଭଗବାଇ କହିଲା—ଏଥିରେ ତାର କିଛି କରିବାର ନାହିଁ । ସେ ତା ନିଜ ପାଇଁ କନ୍ୟା ଖୋଜୁ । ଏହାଶୁଣି ତାର ସ୍ତ୍ରୀ ଆଶ୍ଚର୍ଯ୍ୟ । ଅସନ୍ତୁଷ୍ଟ । ସେ ପ୍ରତିବାଦ କଲା । ସେ କହିଲା—“କୋଷର ନିଜର ପଇସା ନାହିଁ । ତେଣୁ କନ୍ୟା ଖୋଜି ବାହା ହେବା ତା ପକ୍ଷରେ ଅସମ୍ଭବ । ତମେ ତାର ବଡ଼ ଭାଇ । ତମକୁ ତାର ବିବାହ କରେଇବାକୁ ହେବ ।” ଭଗବାଇ

ତା ସ୍ତ୍ରୀ କଥାକୁ କାନ ଦେଲା ନାହିଁ । ସେ ତାର ନିଷ୍ପତ୍ତିରେ ଅଟଳ । ଏମିତିକି ତାଙ୍କ ଘର ସଂପତ୍ତିରୁ କୋରକୁ ଭାଗ ଦେବାକୁ ସେ ନାରାଜ ।

ଭଗବାଇ ନିଷ୍ଠୁର । ସ୍ୱାର୍ଥପର । ଏକଥା ସ୍ତ୍ରୀଟି ତାର ଦେଖିଲା । ଦିଅର ପ୍ରତି ତାର ଦରଦ ବହୁତ । କ'ଣ କରିବ, ସେଇଟା ତାର ଚିନ୍ତା । ଦିନେ ସେ କୋର ମୁଣ୍ଡରୁ ଉକୁଣୀ ବାଛୁଥିଲା । କୋର କଥା ଭାବି ଭାବି ତାକୁ କାନ୍ଦ ମାଡ଼ିଲା । ସେ ନିଜକୁ ସମ୍ଭାଳି ପାରିଲା ନାହିଁ । କୋହକୁ ସେ ଚାପି ରଖିଲା ସିନା, ଆଖିର ଲୁହକୁ ଅଟକାଇ ପାରିଲା ନାହିଁ । ଟପ ଟପ ହୋଇ ଲୁହ ତାର କୋରର ପିଠିରେ ପଡ଼ିଲା । କୋର ବୁଲିପଡ଼ି ଦେଖିଲା ଯେ ତା ଭାଉଜ ଆଖିରେ ଲୁହ । ସେ ଅତି ବ୍ୟସ୍ତ ହୋଇଗଲା । କାହିଁକି ସେ କାନ୍ଦୁଛି ? ଏହା ଥିଲା ତାର ପ୍ରଶ୍ନ । ଭାଉଜ କହିଲା— "ସେ କଥା ଶୁଣିଲେ, ତମ ମନରେ ବହୁତ ଦୁଃଖ ହେବ । ସେଥିପାଇଁ ମୁଁ ସେ କଥା ତମକୁ କହି ପାରିବ ନାହିଁ ।" କୋର କିନ୍ତୁ ନଛୋଡ଼ ବନ୍ଧା । ପ୍ରକୃତ ଘଟଣା ଜାଣିବାକୁ ତାର ପ୍ରବଳ ଇଚ୍ଛା, ସେଥିପାଇଁ ଭାଉଜକୁ ସେ ବାଧ୍ୟ କଲା । ଶେଷକୁ ଭାଉଜ କହିଲା—"ତମ ଭାଇଙ୍କ ଇଚ୍ଛା, ତମେ ତମର ଜୀବିକା ଯୋଗାଡ଼ କରିବ । ତାଙ୍କ ଠାରୁ କିଛି ଆଶା କରିବ ନାହିଁ ।" ଏଇ କଥା କୋର ପ୍ରତି ଅତି ନିଷ୍ଠୁର । ମର୍ମନ୍ତୁଦ । କୋର ସହି ପାରିଲା ନାହିଁ । ସେ ତା ଭାଉଜ କୋଳରେ ଢ଼ୁଲି ପଡ଼ି ଖୁବ୍ କାନ୍ଦିଲା । ଭାଉଜ ବି ତା ସହିତ କାନ୍ଦିଲା । କିଛି ସମୟ ପରେ ଉଭୟେ ପ୍ରକୃତିସ୍ଥ ହେଲେ । ତାପରେ କୋର ଗଲା । ତା ନିଜର ଲୁଗାପଟା, ବଂଶୀ, ଧନୁଶର ଆଉ ଯାହା କିଛି ଥିଲା, ସେସବୁ ଧରିଲା । ଭାଉଜଠାରୁ ବିଦାୟ ନେଇ ବାହାରିଲା । ଭାଉଜ ତାକୁ

ମନା କଲ ନାହିଁ । ବରଂ ବାଟରେ ଖାଇବା ପାଇଁ କିଛି ମୁଡ଼ି ତାକୁ ଦେଲ । ଗଲବେଳେ କୋଷ ଘଉଜକୁ କହିଲ—"ଏଠି ରହିଲେ ତ ମୁଁ ସ୍ତ୍ରୀ ଲୋକଟିଏ ପାଇବ ନାହିଁ । ତେଣୁ ଘର ଛାଡ଼ି ମୋତେ ଯିବାକୁ ହେଉଛି । ମୁଁ ଭାଗ୍ୟକୁ ଆଦର ଅନ୍ୱେଷଣ କରିବ । ଯାହା ଭାଗ୍ୟରେ ଥିବ, ତା ନିଶ୍ଚୟ ହେବ ।"

କୋଷର ତ ଲକ୍ଷ୍ୟ କିଛି ନାହିଁ । ଯୁଆଡ଼େ ଇଚ୍ଛା ହେଲ, ସେ ଗ୍ଲଲ । ବେଶୀ ବାଟ ଯାଇନାହିଁ, ବାଟରେ ସେ ଗୋଟିଏ ବୁଢ଼ାକୁ ଭେଟିଲ । ସେମାନେ କଥାବାର୍ତ୍ତା କରି ଏକାଠି ଯିବା ପାଇଁ ସ୍ଥିର କଲେ । କିଛି ବାଟ ସେମାନେ ଗଲେ । କାହାର ପାଟିରୁ ପଦେ କଥା ବାହାରୁ ନ ଥାଏ । ନିରବ ଯାତ୍ରାରେ ପଥଶ୍ରମ ବାଧେ । କୋଷ ବୁଢ଼ାକୁ କହିଲ—"ଦୁଇଜଣଯାକ ଆମେ ଚ୍ଳିଥାଉ । ଏଥର ଜଣେ ଜଣକୁ ବୋହି ନେଲେ ପଥଶ୍ରମ ବାଧିବ ନାହିଁ । ସୁବିଧାରେ ଯାଇ ହେବ । ଯାତ୍ରା ବି ଆରାମ-ଦାୟକ ହେବ ।" ବୁଢ଼ା ଏ କଥା ଶୁଣି ଭାବିଲ—ଏ ତ ଅସାଧାରଣ କଥା । ଜଣକୁ ଜଣେ ବୋହିଲେ ବାଧିବ । ଆରାମ ଦାୟକ କପରି ହେବ ? ସେ ଏ କଥାରେ ରାଜି ହେଲ ନାହିଁ । ସେମାନେ ସେମାନଙ୍କ ବାଟରେ ଯାଉଥାନ୍ତି, ସେମାନେ ଗୋଟିଏ ପୋଖରୀ ପାଖରେ ପହଞ୍ଚିଗଲେ, ଅତି ଉତ୍ତମ ଜାଗାଟିଏ । ସେମାନେ ସେଠାରେ ବିଶ୍ରାମ କଲେ । ଯେ ଯାହା ଖାଦ୍ୟ ଆଣିଥିଲେ, ଖାଇଲେ । ତାପରେ ବୁଢ଼ାଟି ପୋଖରୀର ପାହାଚରେ ବସିଲ । କୋଷ ଗଲ । ପୋଖରୀ କୂଳ ଅନାବନା ଗଛରେ ପୂର୍ଣ୍ଣ ଜାଗାଟିରେ ବିଶ୍ରାମ କଲ । ଏତିକିବେଳେ କୋଷ ପଚ୍ଚରିଲ ଯେ ଏ ପୋଖରୀଟି କିଏ କରିଛି । ଏହା ତାକୁ ଭଲ ଲାଗୁ ନାହିଁ । ବୁଢ଼ା ପୋଖରୀର ମାଲିକକୁ ଜାଣେ । ସେଥିପାଇଁ ତାର ନାମ କହିଲ,

କୋର କହିଲା—"ଲୋକଟି ପୋଖରୀ କଲା ଅଥଚ ପୋଖରୀ ମଝିରେ ଖୁଣ୍ଟିଟିଏ ବି ପୋତିଲା ନାହିଁ ।" ବୁଢ଼ାଟି ଦେଖିଲା—ପୋଖରୀ ମଝିରେ ଖୁଣ୍ଟିଟିଏ ଅଛି । ସେ ତ କୋର ତାକୁ ଦେଖୁଛନ୍ତି । ଅଥଚ ଖୁଣ୍ଟା ନାହିଁ ବୋଲି କୋର କହୁଛି । କ'ଣ ବା ସେ ଏହାର ଉତ୍ତର ଦେବ, ବୁଢ଼ା ଭାବି ପାରିଲା ନାହିଁ । ମନେ ମନେ ଭାବିଲା—ସେ ଏକ ପାଗଳ ହାବୁଡ଼ରେ ପଡ଼ି ଯାଇଛି । ଚୁପ୍ ରହିଲେ, ବାଟଟି କଟିଯିବ । ତା ସାଥୀରେ ଯୁକ୍ତି କରି ଲାଭ ନାହିଁ ।

କିଛି ସମୟ ପରେ ଉଭୟେ ପୋଖରୀ କୂଳ ଛାଡ଼ି ଆଗକୁ ଗଲେ । ବାଟରେ ପଞ୍ଚେ ମାଈ ମଇଁଷିକୁ କୋର ଦେଖିଲା । ସେ ବୁଢ଼ାକୁ ଦେଖି ପଚାରିଲା—"ଏତେ ମାଈ ମଇଁଷି ଏଠି ଅଛନ୍ତି ଅଥଚ କାହାର ଶିଙ୍ଗଟିଏ ନାହିଁ ?" ବୁଢ଼ା ସବୁ ମଇଁଷିଙ୍କୁ ଲକ୍ଷ୍ୟ କଲା । ସମସ୍ତଙ୍କର ସିଙ୍ଘ ଅଛି । କୋର କ'ଣ କହୁଛି, ସେ ବୁଝି-ପାରିଲା ନାହିଁ । ଖାଲି କହିଲା, "ମୁଁ ଦେଖୁଛି, ସମସ୍ତଙ୍କର ଶିଙ୍ଘ ଅଛି । ତମକୁ କପରି ଦେଖାଯାଉ ନାହିଁ ମୁଁ ଜାଣିପାରୁ ନାହିଁ ।" କୋର ଦେଖି ଦେଲା—"ତୁମେ ଠିକ୍ କହୁନାହଁ । କାହାର ଶିଂଘ ନାହିଁ ।" ଏହାଶୁଣି ବୁଢ଼ା ରଗିଗଲା । କିନ୍ତୁ ଉତ୍ତର ଦେଲା ନାହିଁ । ଚରବରରେ ଆଗେଇଗଲା । ଏହା ଭିତରେ ସେମାନେ ଗୋରୁ ପଲ ପାଖରେ ପହଞ୍ଚି ଯାଇଥିଲେ । ଅଧିକାଂଶ ଗାଈଙ୍କ ବେକରେ ଘଣ୍ଟି ଝୁଲୁଥିଲା । ତାକୁ ଦେଖି କୋର କହିଲା—"ଏତେ ଗୋରୁ, କାହାର ବେକରେ ଘଣ୍ଟି ନାହିଁ । ଏସବୁ କାହାର ? ଏତକ କାମ ସେ କଲା ନାହିଁ ?" ବୁଢ଼ା କୋରକୁ କହିଲା—"ଭଲ କରି ନଜର ପକାଅ । ଅଧିକାଂଶ ବେକରେ ଘଣ୍ଟି ଝୁଲୁଛି । ତୁମେ କ'ଣ ଏହା ଦେଖି ପାରୁନ ?" କୋର

କହିଲା—"ତୁମେ ଠିକ୍ କରି ଦେଖି ପାରୁ ନାହଁ, ସେଥିପାଇଁ ଏପରି କହୁଚ ।" ଏକଥା ଶୁଣି ବୁଢ଼ାର ରାଗ ବଢ଼ିଗଲା । କିନ୍ତୁ କଳ କରି କିଛି ଲାଭ ନାହିଁ । ଏହାହିଁ ବୁଢ଼ା ଭାବିଲା । ତେଣୁ ଚୁପଚାପରେ ସେ ଚାଲିଥାଏ ।

ସେତେବେଳକୁ ସନ୍ଧ୍ୟା ଆସିଗଲାଣି । ଏହା ଭିତରେ ସେମାନେ ବୁଢ଼ାର ଗାଁରେ ପହଞ୍ଚି ଗଲେଣି । ବୁଢ଼ା ସେ କଥା ଯୋଗୀକୁ କହିଲା । ରାତିଟା ତାକୁ କେଉଁଠି କଟାଇବାକୁ ହେବ, ସେଇଟା ଯୋଗୀର ଚିନ୍ତା । ସେଥିପାଇଁ ବୁଢ଼ା ଘରେ ରାତିଟି କଟାଇବା ପାଇଁ ଯୋଗୀ ଅନୁମତି ମାଗିଲା ।

ବୁଢ଼ା ଯୁବକ କଥାରେ ସମ୍ମତ । ଉଭୟେ ବୁଢ଼ା ଘରକୁ ଗଲେ । ସେଠି ଗୁହାଳରେ ଖଟିଆଟିଏ ପଡ଼ିଥିଲା । ଉଭୟେ ସେଥିରେ ବସିଲେ । ଘରର ସ୍ତ୍ରୀ ଲୋକ ପାଣି ଦେଲେ । ସେମାନେ ଗୋଡ଼ହାତ ଧୋଇଧାଇ ଆସିଲେ । ଯୋଗୀ ଘରର ପ୍ରଧାନ ଖୁଣ୍ଟକୁ ଆଉଜି ବସିଲା । କିଛି ବେଳ ଚାଲିଗଲା ପରେ ଯୋଗୀ ପଚାରିଲା—"ବାପା, ତୁମେ ଏ ଗୁହାଳ କଲ । ଅଥଚ ଏଥିରେ ମଜବୁତ ଭୂଲଆ ଖୁଣ୍ଟଟି ବସାଇଲ ନାହିଁ ।" ବୁଢ଼ା ଦେଖିଲା, ଭୂଲଆ ଖୁଣ୍ଟାକୁ ଯୋଗୀ ଆଉଜି ବସିଛି ଅଥଚ ଖୁଣ୍ଟ ନାହିଁ ବୋଲି କହୁଛି । ଏହା ଦେଖି ବୁଢ଼ାଟି କ୍ରୋଧାନ୍ଧ ହେଲା । ରାଗରେ ଜମ ଜମ । କିନ୍ତୁ ଯୋଗୀ ତାର ଅତିଥି । ସେଥିପାଇଁ କିଛି କହିଲା ନାହିଁ । ଯୋଗୀର ରାତରେ ଖାଇବା ପାଇଁ ଚାଉଳ ପକାଇବାକୁ ସ୍ତ୍ରୀକୁ କହିବାକୁ ହେବ । ସେଥିପାଇଁ ସେ ଘର ଭିତରକୁ ଗଲା ।

ବୁଢ଼ାର ଘରେ ତାର ସ୍ତ୍ରୀ ଓ ଝିଅ । ଅତିଥି କିଏ ବୋଲି ସେମାନେ ଜାଣିବାକୁ ଚାହିଁଲେ । ବୁଢ଼ା କହିଲା—"ମୁଁ ତାର

ପରିଚୟ ଜାଣେ ନାହିଁ । କିନ୍ତୁ ସେ ଅତି ବୋକା ଆଉ ହୁଣ୍ଡା । ରାତିରେ ସେ ଏଠି ରହିବ । ତା ପାଇଁ ଗୁଡ଼ିକ ବଟା ପକାଅ ।”

ଝିଅ ପଚାରିଲା—“ତାଙ୍କୁ ଦେଖିଲେ ମନେହୁଏ—ଲୋକଟି ବେଶ୍ ଭଦ୍ର । ବିବେକୀ । କଥା ମଧ୍ୟ ତାର ଭଦ୍ରୋଚିତ । ଏପରି ଅବସ୍ଥାରେ ତୁମେ ତାଙ୍କୁ ବୋକା ଆଉ ହୁଣ୍ଡା କାହିଁକି କହୁଚ ?”

ବୁଢ଼ା କହିଲା—“ତା କଥା ମୋତେ ଶୁ ଆଉ କହନା । ବାଟରେ ଆମେ ସାଥୀ ହୋଇ କିଛି ବାଟ ଆସିଲୁ । ସେ ପ୍ରସ୍ତାବ ଦେଲା—ଏଇମିତି ଯିବା ଅପେକ୍ଷା ଜଣେ ଅନ୍ୟଜଣକୁ ବୋହି ନେଲେ ପଥ କଟିଯିବ, ଯାହା ଆରାମଦାୟକ ହେବ । ପଥଶ୍ରାନ୍ତ ରହିବ ନାହିଁ । ଏପରି ଅଜବ କଥା ଶୁଣି ଜଣେ ରାଗିବ ସିନା, ରାଜି କ’ଣ ହେବ ?

ଝିଅଟି କହିଲା—“ବାପା ତୁମେ ଦୁଇଜଣ ଆସୁଥିଲାବେଳେ କ’ଣ ଗପସପ ହେଉ ନ ଥିଲ ?”

ବୁଢ଼ା କହିଲା—“ନା, ଆମେ ଚୁପ୍ ଚାପ ହୋଇ ଚାଲି ଥିଲୁ ।

ଝିଅ ଉତ୍ତର ଦେଲା—“ତୁମେ ତାଙ୍କୁ ବୁଝିପାରିଲ ନାହିଁ । ସେ ପ୍ରସ୍ତାବ ଦେଉଥିଲେ ଯେ ଏପରି ଚୁପ୍ ଚାପ ହୋଇ ଯିବାଟା କଷ୍ଟର କଥା । ତେଣୁ ଜଣେ କିଛି ବାଟ କଥା କହିବ । ତାପରେ ଆଉ ଜଣେ ଗପ ଆରମ୍ଭ କରିବ । ଗପରେ ବାଟ ଚାଲି ଜଣା ପଡ଼ିବ ନାହିଁ । ତାଙ୍କର ବୋହିବା ଅର୍ଥ କଥା କହି ଅନ୍ୟକୁ ବ୍ୟସ୍ତ ରଖିବା । ତୁମେ ସେକଥା ଧରି ପାରିଲ ନାହିଁ ।”

କଥାଟା ବୁଢ଼ା ମନକୁ ପାଇଲା । ବୁଢ଼ା ପୁଣି କହିଲା—“ସେ କ’ଣ ଗୋଟିଏ କଥା । ଆଉ ଗୋଟିଏ କଥା ଶୁଣ । ଆମେ ଗୋଟିଏ ପୋଖରୀ ପାଖରେ ପହଞ୍ଚିଲୁ । ତା ମଝିରେ ଗୋଟିଏ

ଖୁଣ୍ଟି ଥିଲା । ତାକୁ ସେ ଦେଖି ବ କହିଲା—"ଏ ପୋଖରୀ ଯେ କଲା ସେ ଖୁଣ୍ଟିଟିଏ ପୋତିଲା ନାହିଁ ।" ଏ ଅଜବ କଥା ଶୁଣି ମୋର କ୍ରୋଧ ହେଲା ।

ଝିଅ ପଚାରିଲା—"ବାପା ପୋଖରୀଟି ଯିଏ ଦେଖିଲ, ତା ବନ୍ଧରେ କ'ଣ ଗଛ ଲଗା ହୋଇଛି ।"

ବୁଢ଼ା କହିଲା—"ନାଇଁଲେ ଝିଅ । ବନ୍ଧରେ ଗୋଟିଏ ହେଲେ ଗଛ ନାହିଁ । କୂଳରେ ଖାଲି ଅନା ବନା ଘାସ । ସେଇଠି ସେ ବସିଥିଲା ।"

ଝିଅ କହିଲା—"ତୁମେ ତାଙ୍କୁ ବୁଝି ପାରିଲ ନାହିଁ । ପୋଖରୀ କର ଯଦି ବନ୍ଧରେ ଗଛ ନ ଲଗାଯାଏ, ସେ ପୋଖରୀ ମୂଲ୍ୟହୀନ । ସେସବୁ ଗଛକୁ ସେ ଖୁଣ୍ଟ ବୋଲି କହିଲେ । ତେଣୁ ତାଙ୍କର ତ୍ରୁଟି କେଉଁଠି ରହିଲା ।"

ବୁଢ଼ାର ମନକୁ ଏ କଥା ପାଇଲା । ବୁଢ଼ା ପୁଣି କହିଲା—"ବାଟରେ ମାଈ ମଇଁଷି ପଲ ଓ ଗାଈ ପଲ ଦେଖିଲୁ । ସବୁ ମଇଁଷିର ଶିଂଘ ଥିଲା । ଅଧିକାଂଶ ଗାଈ ବେକରେ ଘଣ୍ଟି । ସେସବୁ ଦେଖିବ ତ ସେ କହିଲା—ମଇଁଷିଙ୍କର ଶିଂଘ ନାହିଁ କ ଗାଈ ବେକରେ ଘଣ୍ଟି ନାହିଁ । ଯେତେ ମୁଁ କହିଲି, ସେ ବୁଝିଲା ନାହିଁ ।"

ଝିଅ କହିଲା—"ବାପା ମଇଁଷି ପଲରେ ମଇଁଷି ପୋଡ଼ୁଅ ଆଉ ଗାଈ ଗୋଠରେ ଷଣ୍ଢ ଥିଲେ କ ?"

ବୁଢ଼ା ନାହିଁ କଲା ।

ଝିଅଟି କହିଲା— ସେସବୁ ନ ଥିବାରୁ ସେ କହିଲେ— ମଇଁଷିଙ୍କର ଶିଂଘ ନାହିଁ କ ଗାଈଙ୍କର ଘଣ୍ଟି ନାହିଁ । ବୁଢ଼ା ମନକୁ

ଏକଥା ବି ପାଇଲା । ସେ ଶେଷକୁ କହିଲା—"ଘରେ ଆସି ସେ ଭୁଳଆ ଖୁଣ୍ଟକୁ ଆଉଜି ବସିଛି ଅଥଚ କହୁଛି ଯେ ମଜବୁତ ଭୁଳଆ ଖୁଣ୍ଟ ଆମର ନାହିଁ । ଏ କ'ଣ ଅଜବ କଥା ନୁହଁ ।" ଝିଅ କହିଲା—"ତୁମେ ବାପା ତାଙ୍କୁ ବୁଝି ପାରିଲ ନାହିଁ । ସେ କହିଲେ, ଭୁଳଆ ଖୁଣ୍ଟି ବସାଇଲ ଯେ ଠେସ ଦେଲ ନାହିଁ । ତେଣୁ ଏହା ମଜବୁତ ନୁହଁ ।"

ବୁଢ଼ା ଭାବିଲା ଯେ ଯୁବକଟି ଉଚିତ କଥା କହୁଛି । ବୁଝିବାରେ ତାର ଭୁଲ ହୋଇଛି ।

ବୁଢ଼ା ଦେଖିଲା ଯୁବକଟି କଥା ଯଥାର୍ଥ । ଝିଅ ତାକୁ ଠିକ୍ ବୁଝି ପାରୁଛି । ସେ ତାକୁ ଯେ ବୋକା ଓ ହୁଣ୍ଡା ବୋଲି ଭାବୁଥିଲା, ତାହା ଭ୍ରମ ପୂର୍ଣ୍ଣ । ଝିଅ କହୁଛି ସେ ବିବେକୀ । ଭଦ୍ର । ଝିଅ ତାକୁ ଠିକ୍ ଚିହ୍ନିଛି ।

ବୁଢ଼ା ଭାବିଲା—ଯୁବକଟିକୁ ଝିଅର ପସନ୍ଦ । ତେଣୁ ସେ ପଚାରିଲା—"ତୁ କଣ ତାକୁ ସ୍ୱାମୀ ଭାବରେ ପାଇବାକୁ ଇଚ୍ଛୁକ ?"

ଝିଅଟି କହିଲା—"ମୁଁ ସେ ବିଷୟରେ ମତ କ'ଣ ଦେବି ? ସେ ତ ତମେ ଓ ମା'ର ସ୍ଥିର କରିବାର କଥା ।"

ବୁଢ଼ାଟି ତା ସ୍ତ୍ରୀ ପାଖକୁ ଗଲା । ସମସ୍ତ କଥା ବୁଢ଼ୀକୁ କହି ପଚାରିଲା—"ଝିଅଟି ପୁଅକୁ ଠିକ୍ ଭାବରେ ବୁଝି ପାରୁଛି । ସେମାନଙ୍କର ମତର ମେଳ ଅଛି । ମୋ ମତରେ ସେ ଏକ ଉପଯୁକ୍ତ ପାତ୍ର । ତମର ମତ କଣ ?"

ବୁଢ଼ୀ ବୁଢ଼ାକୁ କହିଲା—"ମୋର ମନେହୁଏ ସେମାନେ ପରସ୍ପର ପରସ୍ପର ପାଇଁ ଉଦ୍ଦିଷ୍ଟ । କଥାଟା ପକାଇ ଦିଅ ।"

ପରଦିନ ସକାଳ । କୋଇଲିକୁ ବୁଢ଼ାଟି କହିଲା—"ବାପରେ, ତୁମର ଆଉ ଆଗକୁ ଯିବାର ଦରକାର ନାହିଁ । ଏଇଠି ରହିଯାଅ । ମୋ ଝିଅ ସାଥୀରେ ତମର ବିବାହ କରିଦେବି ।"

ବୁଢ଼ା କଥାରେ ସେ ରାଜି । ନବବଧୂପାଇଁ ଦିନ ବାର ସ୍ଥିର ହୋଇଗଲା । କୋଇଲି ନିଜେ ତା ବାହାଘରର ବ୍ୟବସ୍ଥା କଲା ।

---

# ଅଳସୁଆ

ଏକଦା ତିନୋଟି ଭାଇ ଏକାଠି ରହୁଥିଲେ । କୋଉ ସବା ସାନ । ତା ଭଳି ଅଳସୁଆମାନଙ୍କ ଭିତରେ ବିରଳ । ତା'ର କୌଣସି କାମକୁ ଆଗ୍ରହ ନ ଥାଏ । କିନ୍ତୁ, ସେ ଖାଇବାକୁ ଆଗ । ବେଶ୍ ଖାଏ । ତାକୁ ଖାଇବାକୁ ଦେବାପାଇଁ ଭାଇମାନେ ଅକ୍ଷମ । ଜଣକୁ ବସେଇ ଖୁଆଇବା ଫଳରେ ସେମାନେ ତନ୍ତ୍ର ତଳାନ୍ତ ହୋଇଗଲେ । ସେଥିପାଇଁ ଦୁଇଭାଇଙ୍କର ତା ଉପରେ ଭାରି ରାଗ । ତାକୁ ଗାଳି ଦିଅନ୍ତି । ତଥାପି ସେ ତାର ଢଙ୍ଗ ବଦଳାଇଲା ନାହିଁ । ଯାହାହେଉ ଏ ଗାଳି ତା' ପ୍ରତି ଅସହ୍ୟ । ସେଇଥିପାଇଁ ସେ ଦିନେ ଘରଛାଡ଼ି ପଳାଇଲା ।

ଏବେ ସେ ସମ୍ପୂର୍ଣ୍ଣ ସମ୍ବଳହୀନ । ଶେଷକୁ ତା'ର ପିନ୍ଧା ଲୁଙ୍ଗିଟିଏ କେବଳ ରହିଲା । ଦେହ ଫୁଙ୍ଗୁଳା । ସେତେବେଳକୁ ଶୀତଋତୁର ମଧ୍ୟଭାଗ । ସଂଧ୍ୟା ପରେ ଦେହ ଶୀତରେ ବରଡ଼ା-ପତ୍ର ଭଳି ଥରେ । ଦିନେ ସେ ଗୋଟିଏ ଗାଁକୁ ଆସିଲା । ସେଠି

ଗାଁ ମଝିରେ ଧୂନି ଲଗିଥାଏ । ଗାଈଜଗା ପିଲାମାନେ ସେହି ଧୂନିରେ ବିଲମୂଷାକୁ ପୋଡ଼ି ଖାଉଥିଲେ । କୋଚ ନିଜକୁ ଉଷୁମ କରିବାପାଇଁ ସେ ଧୂନି ପାଖରେ ବସିପଡ଼ିଲା । ଗାଈଜଗା ପିଲାମାନେ ତାକୁ କିଛି ପୋଡ଼ା ମୂଷା ଖାଇବାକୁ ଦେଲେ । ଖିଆ ସରିଲା । ଯେଝା ଘରକୁ ସେମାନେ ଶୋଇବାକୁ ଚାଲିଗଲେ । ଏକା କୋଚ ରହିଗଲା । ଧୂନି ପାଖ ଉଷୁମ । ଆରାମଦାୟକ । ସେତ ଅଳସୁଆ । ଭାବିଲା—କାହାକୁ ପୁଣି ଶୋଇବା ପାଇଁ ଜାଗା ମାଗିବ । ସେ ଯେ ଜାଗା ଦେବ, ତାହା ମଧ୍ୟ ଠିକ୍ ନାହିଁ । ତେଣୁ ସେ ସେଇଠି ଶୋଇ ପଡ଼ିଲା । ସେ ଚିନ୍ତା କଲା—ଏଇଟା ଶୀତଦିନ । ଘୋଡ଼ି ହୋଇ ଶୋଇବା କଥା । ସେଥିପାଇଁ ଲୁଗା ଦରକାର । ତାର ତ ଲୁଗା ନାହିଁ । ଲୁଗା ତ ସୂତାରେ ତିଆରି । ତେଣୁ ଲୁଗା ବଦଳି ସୂତାରେ ସେ ଚଳାଇ ନେବ । ସେଥିପାଇଁ ତା'ର ଲୁଙ୍ଗିରୁ ସୂତାଟିଏ ବାହାର କଲା । ତାର ଗୋଟିଏ ମୁଣ୍ଡ ତା ବୁଢ଼ା ଆଙ୍ଗୁଠିରେ ବାନ୍ଧିଲା । ଆଉ ଅଂଶଟି କାନରେ ଗୁରେଇ ଦେଲା । ସୂତାଟି ତା ଦେହର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ଲମ୍ବିଗଲା । ତା'ପରେ ସେ ସେଇଠି ଶୋଇପଡ଼ିଲା ।

ରାତିରେ ଧୂନି ନିଆଁ ଲିଭିଗଲା । ଧୂନିର ପାଉଁଶ ତ ବେଶ୍ ଉଷୁମ । ବୁଲା ଗାଁ କୁକୁରଟି ଖାଦ୍ୟ ଅନ୍ୱେଷଣରେ ବୁଲୁଥିଲା । ଉଷୁମ ପାଉଁଶ ଦେଖି ସେ କୋଚ ପାଖରେ ଶୋଇଗଲା ।

ଧାନ ଅମଳବେଳ । ଗାଁ ମୁଖିଆର ବହୁତ ଜମି ବାଡ଼ିତ । ସେଥିପାଇଁ ସେ ଭୋରରୁ ମୂଲିଆ ଖୋଜି ବାହାରିଲା । ଗାଁ ଦାଣ୍ଡରେ ଦେଖିଲା ଯେ ଖାଲି ଦେହରେ ଲୋକଟିଏ ଶୋଇଛି । ପାଖରେ ତାର କୁକୁର । ସେ କୋଚକୁ ଉଠାଇଲା । ତାକୁ

ପଚାରିଲା—"ତୁ କଏ ? ଖାଲି ଦେହରେ କେମିତି ଶୋଉଛୁ ? ତତେ ଥଣ୍ଡା ଲାଗୁନାହିଁ ?" ବୋବା ଉତ୍ତର ଦେଲା—"ନାଁ । ଏଇଟି ମୋ କୁକୁର । ସେ ଥଣ୍ଡା ଖାଏ । ଏପରିକି ଲକ୍ଷେ ଲୋକଙ୍କର ଥଣ୍ଡା ବି ସେ ଖାଇଦେବ । ତେଣୁ ମୋତେ ଶୀତ ଲାଗୁନାହିଁ ।" ଏକଥା ଶୁଣି ମୁଖିଆଟି ଆଶ୍ଚର୍ଯ୍ୟ । ତତ୍‌କ୍ଷଣାତ୍ ସେ ଭାବିଲା—ଯେଉଁ କୁକୁର ଏହା କରିପାରୁଛି, ସେ ତ ଉପକାରୀ ଜୀବ । ତାକୁ ରଖିବା ଭଲ । ତାଛଡ଼ା ସେ ତା ଚାଷ ଚାକରଙ୍କ ପାଇଁ ଶୀତଲୁଗା କିଣୁଛି । ଏଥିପାଇଁ ତାର ବହୁତ ପଇସା ଖର୍ଚ୍ଚ ହୁଏ । ତଥାପି ସେମାନେ ଥଣ୍ଡାରେ ସଢ଼ନ୍ତି । ଯଦି ସେ ଏ କୁକୁରଟିକୁ ରଖନ୍ତା, ତାହାହେଲେ ତା ଘରର ଲୋକଙ୍କ ସହିତ ଚାକରବାକର କାହାକୁ ବି ଥଣ୍ଡା ଲାଗନ୍ତା ନାହିଁ । ତେଣୁ ସେ କୁକୁର ଦାମ୍ କେତେ ରଖିଛ ? ବୋବାକୁ ପଚାରିଲା । ବୋବା କହିଲା—"ତାର ମୂଲ୍ୟ ପଚିଶ ଲକ୍ଷ ଟଙ୍କା । ତାଠାରୁ କମ୍ ହେଲେ ସେ ବିକିବ ନାହିଁ । ଏଥିରେ ଆଉ ମୁଲେଇବାର ପ୍ରଶ୍ନ ଉଠୁ ନାହିଁ । ନେବା ନ ନେବା ତମର ଇଚ୍ଛା ।" କୁକୁରଟିକୁ କିଣିବା ପାଇଁ ମୁଖିଆର ଝୁଙ୍କ । ବୋବାକୁ ତା ଘରକୁ ନେଲା । ଟଙ୍କା ତକ ଗଣି ଦେଲା । ବୋବା ଟିକଏ ବି ଆଉ ଡେରି କଲା ନାହିଁ । ଘରମୁହାଁ ଚାଲିଲା । ଘରେ ପହଞ୍ଚିବାମାତ୍ରେ ଭାଇମାନଙ୍କୁ ତାର କଥା—"ମୋପାଇଁ କନ୍ୟା ଖୋଜ । ମୁଁ ବିବାହ କରିବି । ବାହାଘର ସମସ୍ତ ଖର୍ଚ୍ଚ ମୁଁ ବହନ କରିବି ।" ଏକଥା ଶୁଣି ଭାଇମାନେ ଆଶ୍ଚର୍ଯ୍ୟ । ଭାବିଲେ ସେ ତ ମହା ଅଳସୁଆ । ଭାଗ୍ୟକୁ ତାକୁ କିଛି ପଇସା ମିଳିଯାଇଛି । ସେଥିପାଇଁ ଘରକୁ ତା'ର ପ୍ରତ୍ୟାବର୍ତ୍ତନ । ସେଥିପାଇଁ ସେମାନଙ୍କର ତାକୁ ଭାରି ଆଦର । ପୂର୍ବ କଥା ସବୁ ପାଶୋରି ପକାଇଲେ ।

ସୂର୍ଯ୍ୟଖୁଣ୍ଟରେ ବାହାଘର ସରିଗଲା । ତିନଭାଇ ଯାକ ଏଣିକି ଏକାଠି ରହିଲେ । ଖୁସିରେ ଓ ଆନନ୍ଦରେ ତାଙ୍କର ସଂସାର ଚାଲିଲା । ଏଣେ ମୁଖିଆଟି ତ କୁକୁରକୁ କିଣିଥିଲା । ସେ କୁକୁର ନେଇ କାମିକାମାନଙ୍କୁ ନିଦରୁ ଉଠେଇଲା । ସେମାନଙ୍କୁ କହିଲା—"ଏ କୁକୁରଟି ଗୋଟିଏ ମୂଲ୍ୟବାନ ପଶୁ । ଏହା ଅଣ୍ଡା ଖାଏ । ମୋର ଭାଗ୍ୟ ଯେ ମୁଁ ଏହାକୁ ପାଇଛି । ତୁମେ ଏହାକୁ ନିଅ । ଧାନଖଳାର କୁଡ଼ଆ ମୁହଁରେ ବାନ୍ଧିଦେବ । ରାତିରେ ଆଉ ଶୀତ ହେବ ନାହିଁ ।" ମୁଖିଆର କଥା ଚାକରମାନେ ମାନିଲେ । କୁକୁରଟି ନେଇ କୁଡ଼ଆ ମୁହଁରେ ବାନ୍ଧିଦେଲେ ।

ସକାଳ ହେଲା । କୁକୁର ଯେଉଁଠି ବନ୍ଧା ହୋଇଥିଲା, ସେଠି ତ ବେଙ୍ଗଳା ପଡ଼ିବ । ତେଣୁ କୁକୁରକୁ ଅନ୍ୟ ଜାଗାକୁ ନେଇଗଲେ । ରାତିଯାକ ଚାକରମାନେ ଶୀତରେ ଥରୁ ଥରୁ । ଅନିଦ୍ରା । ତେଣୁ ଜଲଦି ସେମାନେ କ୍ଳାନ୍ତ ହୋଇପଡ଼ିଲେ । ଏତିକିବେଳେ ମାଲିକ ଆସି ସେଠାରେ ପହଞ୍ଚିଲା । କୁକୁର କ'ଣ କରୁଛି, ସେ ପଚାରିଲା, ଚାକରମାନେ କହିଲେ—"କୁକୁର ଜମା ଅଣ୍ଡା ଖାଇଲା ନାହିଁ, ରାତିଯାକ ସେମାନେ ଶୀତରେ ଥରିଲେ ।" ମାଲିକ ଏ କଥା ବିଶ୍ୱାସ କଲାନାହିଁ । ସେଥିପାଇଁ କୁକୁରଟିକୁ ନିଜେ ନେଇ ଘର ପାଖରେ ବାନ୍ଧିଲା । ରାତିରେ କୌଣସି ପରିବର୍ତ୍ତନ ହେଲା ନାହିଁ । ସେ ଯେ ମିଥ୍ୟା ଆଉ ପ୍ରତାରଣାର ଶିକାର । ଆଉ ତାର ସନ୍ଦେହ ରହିଲା ନାହିଁ । ସେଥିପାଇଁ ସେ ଦୁଃଖିତ । ତା'ର ରାଗ ତାତିଗଲା । ସେ ଗୋଟାଏ ଠେଙ୍ଗା ନେଲା । ବିଚରା କୁକୁରକୁ ପିଟି ପିଟି ମାରିପକେଇଲା । ଏହିପରି ଭାବରେ ସେ ତାର ଟଙ୍କା ସବୁତକ ହରେଇଲା । ଖାଲି ଏତିକି ନୁହେଁ । ଏଥିପାଇଁ ସେ ଗାଁର ସମସ୍ତଙ୍କର ଥଟ୍ଟାର ପାତ୍ର । ସମସ୍ତେ ତାକୁ ଉପହାସ କଲେ ।

———

# ବାଳକଟି କୁକୁର ପାଳିଥିଲା

ଏକଦା ସାତୋଟି ଭାଇ ଥିଲେ । ବଡ଼ ଛ'ଜଣ ବିବାହିତ । ସବା ସାନଟି ବାଉଳା । ସେ ଗାଈଗୋରୁଙ୍କ ଯତ୍ନ ନିଏ । ବଡ଼ ଛ'ଭାଇଯାକ ଶିକାରୀ । ଶିକାରକୁ ଯାଇ ଏକାଦିକ୍ରମେ ମାସେ ଦୁଇମାସ ବାହାରେ ପ୍ରାୟ ରହିଯାଆନ୍ତି । ସେମାନଙ୍କର ଛ'ଟିଯାକ ସ୍ତ୍ରୀ ଡାହାଣୀ । ସ୍ୱାମୀମାନଙ୍କ ଅନୁପସ୍ଥିତିରେ ଛଅ ଜଣଯାକ ଗୋଟିଏ ଅଶ୍ୱତ୍ଥ ଗଛରେ ଦୂରକୁ ଯାଆନ୍ତି । ସେଠାରେ ମଣିଷ ଖାଆନ୍ତି କିମ୍ବା ଅନ୍ୟ କିଛି ସପ୍ତିତାନ କରନ୍ତି । ସେମାନେ ଘରେ ରହୁନାହାନ୍ତି । ଏକଥା ସାନଭାଇ ଦେଖେ । ସେମାନେ କ'ଣ କରୁଛନ୍ତି ତାହା ଜାଣିବାକୁ ତାର ଭାରି ଆଗ୍ରହ । ତେଣୁ ଦିନେ ସେ ଅଶ୍ୱତ୍ଥ ଗଛର ଗଣ୍ଡିରେ ଥିବା ଖୋଲ ଭିତରେ ଲୁଚିରହିଲା । ତା ଭାଉଜମାନେ ଡାଳରେ ବସିବା ମାତ୍ରେ ଗଛଟି ଉପରକୁ ଉଠିଲା । ଆକାଶରେ ଉଡ଼ି କରି ଯାଇ ଗୋଟିଏ ବଡ଼ ନଈକୂଳେ ପହଞ୍ଚିଲା । ସେଇଠି ସ୍ତ୍ରୀଲୋକମାନେ ଗଛରୁ ଓହ୍ଲାଇ ଅଦୃଶ୍ୟ ହୋଇ ଗଲେ । କିଛି ସମୟ ପରେ ସେମାନେ ଫେରି ଗଛରେ ଚଢ଼ିଲେ । ଗଛଟି ତାର ପୂର୍ବ ସ୍ଥାନକୁ ଫେରି ଆସିଲା । କିନ୍ତୁ ଭାଉଜମାନେ ଓହ୍ଲାଇଲାବେଳେ ଦିଅରକୁ ଗଛ ଗଣ୍ଡିରେ ଲୁଚିଥିବାର ଦେଖିଲେ । ସେ ଯାହା ଦେଖିଛି ସେ କାହାକୁ କହିବ ନାହିଁ । ଏଥିପାଇଁ ସେମାନେ ତାକୁ ପ୍ରତିଜ୍ଞାବଦ୍ଧ କରାଇଲେ । ସେ କହିଲା—ଏ କଥା ସେ ଭାଇମାନଙ୍କୁ କହିଦେବ । ଏହା ଶୁଣି ସେମାନେ ରାଗିଗଲେ । କିନ୍ତୁ ଶେଷରେ ବଡ଼ ଯା' ସେମାନଙ୍କୁ କହିଲା—"ଏପରି ଗର୍ହିତ କାମ କରିବାର କିଛି ଆବଶ୍ୟକତା ନାହିଁ ।" ସେ ଦୁଇଟି ଲୁହା କଣ୍ଟା ଆଣିଲା । ସାନଭାଇ ଗୋଡ଼

ଗୋଇଠିରେ ତାକୁ ପୁଟେଇ ଦେଲା । ସାନଭାଇଟି ସାଙ୍ଗେ ସାଙ୍ଗେ ଗୋଟିଏ କୁକୁର ହୋଇଗଲା । ଯାହା କୁହାଯାଉଥିଲା ସାନଭାଇଟି ବୁଝିପାରୁଥିଲା । କିନ୍ତୁ ସେ କିଛି କହିପାରୁ ନଥିଲା । ସେ ତାଙ୍କ ପଛେ ପଛେ ଘରକୁ ଗଲା । ସେଇଠି ସେ ରହେ । ଭାଉଜମାନେ ତାକୁ ଭଲ ବ୍ୟବହାର କରନ୍ତି । ନିୟମିତ ଭାବରେ ମଣିଷ ପରି ଖାଦ୍ୟ ଦିଅନ୍ତି । କୁକୁର ପରି ବଳକା ବଳକିକ କି ଅଇଁଠା ଖାଦ୍ୟ ଖାଇବାକୁ ଦିଅନ୍ତି ନାହିଁ ।

ମାସକ ପରେ ଭାଇମାନେ ଘରକୁ ଆସିଲେ । ତାଙ୍କ ସ୍ତ୍ରୀମାନେ ସେମାନଙ୍କୁ କହିଲେ ଯେ ସବୁ ଠିକ୍ ଠାକ୍ ଅଛି । ତାଙ୍କ ଅନୁପସ୍ଥିତିରେ କେବଳ ସବା ସାନଭାଇ କୁଆଡ଼େ ଚାଲିଗଲା ଆମେ ଜାଣିନାହୁଁ । ସେମାନେ ଏପରି କଥାବାର୍ତ୍ତା ହେଉଥିଲାବେଳେ କୁକୁରଟି ଆସିଲା । ଲାଙ୍ଗୁଳ ହଲେଇ ଭାଇମାନଙ୍କ ଦେହରେ ଘସି ହେଲା । ଏ କୁକୁରଟି କେଉଁଠୁ ଆସିଛି ବୋଲି ଭାଇମାନେ ପଚାରିଲେ । ସ୍ତ୍ରୀ ଲୋକମାନେ କହିଲେ ଯେ, ଦିଅରଟି ହଜି ଯାଇଥିବା ଦିନଠାରୁ ସେ କୁକୁରଟି ଆସି ଏଠି ଅଛି । ତେଣୁ କଥାଟି ସେଇଠି ରହିଲା । ସାନଭାଇକୁ ବଡ଼ଭାଇମାନେ ଚାରିଆଡ଼େ ବହୁତ ଖୋଜାଖୋଜି କଲେ । କିନ୍ତୁ ତାର କିଛି ସନ୍ଧାନ ମିଳିଲା ନାହିଁ ।

ସେ ରାଜ୍ୟର ରାଜାଙ୍କର ତିନୋଟି ଝିଅ । ସେମାନେ ଅବିବାହିତ । ଅନୂଢ଼ା । କୌଣସି ପ୍ରସ୍ତାବ ତାଙ୍କ ମନକୁ ଆସେ ନାହିଁ । ତାଙ୍କ ଢଙ୍ଗ ଦେଖି ବାପା ତାଙ୍କର ବିରକ୍ତ । ଶେଷକୁ ବାପା ତାଙ୍କୁ କହିଲେ—"ମୁଁ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ଧାର୍ଯ୍ୟ କରି ଦେଉଛି । ସେଦିନ ରାଜ୍ୟର ସବୁଲୋକ ଏକାଠି ହେବେ । ତାଙ୍କ ଭିତରୁ ତୁମେ ତମ ବର ବାଛିବ ।" କଥାଟା ସମସ୍ତଙ୍କ ମନକୁ ପାଇଲା ।

ରାଜାଙ୍କ ଆଦେଶାନୁସାରେ ନିର୍ଦ୍ଦିଷ୍ଟ ଦିନ ରାଜ୍ୟର ସବୁ ଲୋକେ ଜୁଟିଲେ । ସେମାନଙ୍କ ଭିତରେ ଛଅଭାଇ ଓ କୁକୁରଟି ବି ଥିଲେ । ତିନି ରାଜକୁମାରୀଙ୍କୁ ସେଠାକୁ ଅଣାଗଲା । ତିନୋଟି ମାଛି ଧରା ହୋଇ ଆସିଲେ । ଗୋଟିଏ ମାଛିର ବେକରେ ଖଣ୍ଡେ ଧଳାସୂତା ବାନ୍ଧି ଦିଆଗଲା । ସେଇଟା ବଡ଼ ଜେମାର । ଦ୍ୱିତୀୟ ମାଛି ବେକରେ ନାଲି ସୂତା ବନ୍ଧା ହେଲା । ତାହା ଦ୍ୱିତୀୟ ଜେମା ପାଇଁ । ଶେଷ ମାଛିର ବେକରେ ନୀଳସୂତା । ତାହା ସାନ ରାଜକୁମାରୀ ପାଇଁ । ତିନି ଜେମାଯାକ ଗମ୍ଭୀର ଭାବେ ଶପଥ ନେଲେ ଯେ, ରାଜଜେମାଙ୍କ ପାଇଁ ଉଦ୍ଦିଷ୍ଟ ମାଛି ଯାହା ଉପରେ ବସିବ, ତାକୁ ସେଇ ରାଜଜେମା ବାହା ହେବ । ନାଲି ଓ ନୀଳ ମାଛି ଗହଳରେ ବସିଥିବା ଦୁଇଟି ଲୋକଙ୍କ ଉପରେ ଯାଇ ବସିଲେ । କିନ୍ତୁ ଧଳାସୂତା ବନ୍ଧା ମାଛିଟି ଚାରିଆଡ଼େ ଘୂରି ଘୂରି ଶେଷରେ ଛଅଭାଇଙ୍କ ପାଖରେ ଥିବା କୁକୁର ଉପରେ ବସିପଡ଼ିଲା । ଏହା ଦେଖି ଲୋକମାନେ ହସି ଉଠିଲେ । ଥଟ୍ଟା ଓ ବିଦ୍ରୂପ ଚାରିଆଡ଼ ବ୍ୟାପିଲା । କିନ୍ତୁ ବଡ଼ ରାଜଜେମା ଗମ୍ଭୀର । ଅବିଚଳିତ । ସେ କହିଲେ—"ମୋ ଭାଗ୍ୟରେ ଯାହା ଅଛି । ମୁଁ ତାକୁ ଆଦରି ନେବି । ଅନ୍ୟମାନଙ୍କର ବ୍ୟସ୍ତ ହେବାର କାରଣ ନାହିଁ । ତେଣୁ ମୁଁ କୁକୁରକୁ ବିବାହ କରିବି ।" ବିଧି ଅନୁସାରେ ତିନି ଜେମାଙ୍କର ନିର୍ବନ୍ଧ ହେଇ ସାଙ୍ଗେ ସାଙ୍ଗେ ବାହାଘର ହୋଇଗଲା । ଦୁଇ ସାନ ଜେମା ତାଙ୍କ ସ୍ୱାମୀଙ୍କ ସହ ତାଙ୍କ ଘରକୁ ଚାଲିଗଲେ । କିନ୍ତୁ ବଡ଼ ଜେମା କୁକୁର ସହିତ ତାଙ୍କ ବାପ ଘରେ ରହିଲେ । ଦିନେ ରାଜଜେମାଙ୍କ ପାଖରେ କୁକୁର ଶୋଇଥାଏ । ଏତିକିବେଳେ ରାଜଜେମା କୁକୁର ପାଦରେ ମରା ହୋଇଥିବା କଣ୍ଟା ଦୁଇଟିକୁ

ଦେଖି ନେଲେ । ଏହା କୁକୁରକୁ କଷ୍ଟ ଦେଉଥିବ । ସେଥିପାଇଁ ଚମୁଚାଟିଏ ଆଣି କଣ୍ଢା ଦୁଇଟିକୁ ସେ ବାହାର କରିଦେଲେ । ସାଥେ ସାଥେ କୁକୁରଟି ତାର ରୂପ ଫେରି ପାଇଲା । ସେ ଏବେ ମଣିଷ । ଫଳରେ ସମସ୍ତେ ଖୁସି । ସାନଭାଇ ଓ ରାଜଜେମା ଆନନ୍ଦରେ ରହିଲେ ।

ନେଣ୍ଟୁଦନ ବିତିଗଲା । ଛ'ଭାଇ ଚିନ୍ତା କଲେ-ଯେତେବେଳେ କୁକୁରଟି ତାଙ୍କର । ରାଜଜେମା ତାକୁ ବିବାହ କଲା । ନଷ୍ଟ ଦୃଷ୍ଟିରୁ ସେମାନେ କପରି ଅଛନ୍ତି, ତାଙ୍କର ଜାଣିବା ଉଚିତ । ସେଥିପାଇଁ ସେମାନେ ରାଜଜେମାଙ୍କ ପାଖକୁ ଆସିଲେ । ସେଠି ସାନଭାଇକୁ ଦେଖି ସେମାନେ ଆଶ୍ଚର୍ଯ୍ୟ । ବିସ୍ମିତ । ତାଠାରୁ ସବୁ କଥା ଶୁଣିଲେ । ସେମାନେ ରାଗରେ ପ୍ରଜ୍ଜ୍ୱଳିତ । ପ୍ରତିଶୋଧ ପାଇଁ ସେମାନେ କୂଅଟିଏ ଖୋଳାଇଲେ । ସ୍ତ୍ରୀମାନଙ୍କୁ ଡାକି କୂଅକୁ ଦେଖାଇବା ଆଳରେ ସେମାନଙ୍କୁ କୂଅ ଭିତରକୁ ଠେଲି ଦେଲେ । ତାପରେ ମାଟିରେ କୂଅକୁ ପୂର୍ଣ୍ଣ କରି-ଦେଲେ । ଏଇପରି ଡାଆଣୀମାନଙ୍କର ପରିସମାପ୍ତି ଘଟିଲା ।

---

# ପୃଥିବୀର ଲୋକକଥା

୧ । ଭିଏତ୍‌ନାମ
୨ । ଲାଦାଖ ( ୧ )
୩ । ଲାଦାଖ ( ୨ )
୪ । ପଞ୍ଜାବ ( ୧ )
୫ । ପଞ୍ଜାବ ( ୨ )
୬ । ପଞ୍ଜାବ (୩)
୭ । ପଞ୍ଜାବ ( ୪ )
୮ । ପଞ୍ଜାବ ( ୫ )
୯ । ପଞ୍ଜାବ ( ୬ )
୧୦ । ପଞ୍ଜାବ ( ୭ )
୧୧ । ଉତ୍ତର ପ୍ରଦେଶ ( ୧ )
୧୨ । ଉତ୍ତର ପ୍ରଦେଶ ( ୨ )
୧୩ । ଉତ୍ତର ପ୍ରଦେଶ (୩)
୧୪ । ଉତ୍ତର ପ୍ରଦେଶ (୪)
୧୫ । ମଧ୍ୟପ୍ରଦେଶ ( ୧ )
୧୬ । ଆସାମ ( ୧ )
୧୭ । କାଶ୍ମୀର ( ୧ )
୧୮ । କାଶ୍ମୀର ( ୨ )
୧୯ । କାଶ୍ମୀର (୩)
୨୦ । ଇହୁଦୀ ( ୧ )
୨୧ । ହିମାଚଳ ପ୍ରଦେଶ ( ୧ )
୨୨ । ଆସାମ ( ୨ )
୨୩ । ରୁଷିଆ ( ୧ )
୨୪ । ସାନ୍ତାଳ ( ୧ )
୨୫ । ଇଟାଲୀ ( ୧ )
୨୬ । ମଧ୍ୟପ୍ରଦେଶ ( ୨ )
୨୭ । ଇହୁଦୀ ( ୨ )
୨୮ । ଶ୍ରୀଲଙ୍କା ( ୧ )
୨୯ । ଶ୍ରୀଲଙ୍କା ( ୨ )
୩୦ । ସାନ୍ତାଳ ( ୨ )
୩୧ । ସାନ୍ତାଳ (୩)
୩୨ । ସାନ୍ତାଳ ( ୪ )
୩୩ । ସାନ୍ତାଳ ( ୫ )
୩୪ । ସାନ୍ତାଳ ( ୬ )
୩୫ । ସାନ୍ତାଳ ( ୭ )
୩୬ । ସାନ୍ତାଳ ( ୮ )
୩୭ । ସାନ୍ତାଳ ( ୯ )
୩୮ । ସାନ୍ତାଳ ( ୧୦ )
୩୯ । ସାନ୍ତାଳ ( ୧୧ )
୪୦ । ସାନ୍ତାଳ ( ୧୨ )
୪୧ । ସାନ୍ତାଳ ( ୧୩)
୪୨ । ସାନ୍ତାଳ ( ୧୪ )
୪୩ । ନେପାଳ ( ୧ )
୪୪ । ଇହୁଦୀ (୩)
୪୫ । ଇହୁଦୀ ( ୪ )
୪୬ । ନେପାଳ ( ୨ )
୪୭ । ତିବ୍ବତ ( ୧ )
୪୮ । ଚୀନ ( ୧ )
୪୯ । ହରିଆନା ( ୧ )
୫୦ । ଜାପାନ ( ୧୬ )

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**
**ଗୋ ଦିଘାଙ୍କ, ଜି. - ପୁରୀ**